# ସମର ତରଙ୍ଗ

[illegible] ମହାନ୍ତି



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ - ୨

# ସମର ତରଙ୍ଗ

( ୰ ବ୍ରଜନାଥ ବଡ଼ଜେନା )


ସମ୍ପାଦନା—ଅଧ୍ୟାପକ **ଦେବେନ୍ଦ୍ର ମହାନ୍ତି**

ଖ୍ରୀଷ୍ଟ କଲେଜ, କଟକ



ପ୍ରକାଶକ

# ମୁଖବନ୍ଧ

## କବି ଜୀବନ:—

କବି ବ୍ରଜନାଥ ବଡ଼ଜେନା ଆନୁମାନିକ ୧୭୩୦ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳରେ ଜନ୍ମ ଗ୍ରହଣ କରିଥିବାର ଜଣାଯାଏ । କବିଙ୍କର ବଂଶ ପରମ୍ପରା ବିଷୟରେ ଜଣାଯାଏ ଯେ ସେ ଉତ୍କଳର ପ୍ରସିଦ୍ଧ ଭକ୍ତ ରଘୁ ଅରକ୍ଷିତଙ୍କ ବଂଶରେ ଜନ୍ମ ଗ୍ରହଣ କରିଥିଲେ । କବି ତାଙ୍କର ଗ୍ରନ୍ଥମାନଙ୍କରେ ନିଜର ପରିଚୟ ପ୍ରାଞ୍ଜଳ ଭାବରେ ପ୍ରଦାନ କରିଅଛନ୍ତି । ଏ ବିଷୟରେ କବିଙ୍କର ଶ୍ୟାମ ରସୋତ୍ସବ ଓ କେଳି କଳାନିଧିରୁ ଦୁଇଗୋଟି ଉଦ୍ଧୃତ ଗ୍ରହଣ କରାଯାଇପାରେ ।

(୧) "ଶିଷ୍ଟ କରଣ କୁଳରେ ଜନମ ଢେଙ୍କାନାଳରେ
ବାସ କଟ୍ଟକାକୁଁ ହେଲା ବିଷୟୀବଶେ
ଶ୍ରୀ ମାଳାଦ୍ରି ଥିଲା ବାସ ରଘୁ ଅରକ୍ଷିତ ବଂଶ
ମୂର୍ଖ ରତ୍ନାକରୁ ବିଷ ଜନ୍ମିଲା ଆଶେ ।"

( ଶ୍ୟାମ ରସୋତ୍ସବ )

(୨) "ବର୍ଣ୍ଣରେ ଅଟୁ ଆମ୍ଭେ ଶିଷ୍ଟ କରଣ,
ରଘୁ ଅରକ୍ଷିତଙ୍କ ବଂଶେ ନିପୁଣ ଯେ ।"

( କେଳି କଳାନିଧି )

ଏଥିରୁ ଜଣାଯାଏ ଯେ କବିଙ୍କର ପୂର୍ବପୁରୁଷମାନେ ପୁରୀକ୍ଷେତ୍ରରେ ବାସ କରୁଥିଲେ । କୌଣସି କାରଣ ବଶତଃ କବିଙ୍କର ପୂର୍ବପୁରୁଷମାନେ ଢେଙ୍କାନାଳରେ ଆସି ଅବସ୍ଥାନ କଲେ । ଢେଙ୍କାନାଳରେ କବିଙ୍କର ଜନ୍ମ । ଉତ୍କଳର ପ୍ରସିଦ୍ଧ ଭକ୍ତ ରଘୁଅରକ୍ଷିତଙ୍କ ବଂଶରେ ଓ ଶିଷ୍ଟକରଣ କୁଳରେ କବି ଜନ୍ମଗ୍ରହଣ କରିଥିଲେ । ବ୍ରଜନାଥ ବଡ଼ଜେନାଙ୍କର ଚଉପଦୀ ଗ୍ରନ୍ଥର ସଂପାଦକ ଶ୍ରୀ ସୁଧାକର ପଟ୍ଟନାୟକ ମତପୋଷଣ କରିଅଛନ୍ତି ଯେ, ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟ ପାଦରେ ବ୍ରଜନାଥଙ୍କର ପୂର୍ବପୁରୁଷମାନେ ପୁରୀକ୍ଷେତ୍ରରେ ବାସକରୁଥିଲେ । କିଛି ସମୟ ପରେ ସେମାନେ ପୁରୀରୁ ଖୋର୍ଦ୍ଧାକୁ ଚାଲି ଆସିଲେ । ଖୋର୍ଦ୍ଧାରେ ସେମାନେ ପ୍ରାୟ ପଚିଶ ବର୍ଷ ଅବସ୍ଥାନ କରି ସାରିବା ପରେ ପ୍ରାୟ ୧୬୦୦ ଖ୍ରୀ. ଅ. ରେ ସେଠାରୁ ଢେଙ୍କାନାଳକୁ ଚାଲି ଆସିଲେ । ସେହି ସମୟରୁ ପୁରୁଷାନୁକ୍ରମେ ସେମାନଙ୍କର ବଂଶଧରଗଣ ଢେଙ୍କାନାଳରେ ଅବସ୍ଥାନ କରୁଅଛନ୍ତି ।

କବି ସମର ତରଙ୍ଗରେ ନିଜର ବିଶଦ ପରିଚୟ ପ୍ରକାଶ କରିଅଛନ୍ତି । ସମର ତରଙ୍ଗର ସପ୍ତମ ଛାନ୍ଦରେ କବି ଲେଖିଅଛନ୍ତି,

"ବାଲୁକେଶ୍ୱର ପଟ୍ଟନାୟକଙ୍କର
ଭାଗ୍ୟରେ ହେଲୁଁ ଆମ୍ଭେ ଚାରିକୁମର ଯେ ।
ଚାରିହେଁ ପିତାଙ୍କ ସୁକୃତ ବଳରେ
କବିତା ପ୍ରସରିଲା ନାନା ପ୍ରକାରେ ଯେ ।
ଅଗ୍ରଜ ଗୋପୀନାଥ ପଟ୍ଟନାୟକ
ଗୁଣବନ୍ତରେ ତାଙ୍କୁ ଜାଣନ୍ତି ଲୋକ ଯେ ।
ତାଙ୍କ ସମସ୍ତ ଗଲେ ସଦାଚରଣେ
ଅନ୍ତେ ପଶିଲେ ସଦାନନ୍ଦ ଚରଣେ ଯେ ।

ତାଙ୍କ ଅନୁଜ ଜଗନ୍ନାଥ ଯେ ନାମ
ଗୁଣବନ୍ତେ ସେ ରାଜକାର୍ଯ୍ୟକୁ କ୍ଷମ ଯେ ।
କବି ଭୂଷଣ ପଟ୍ଟନାୟକ ପଦ
ଏଥୁଁ କବିତା ଶକ୍ତି ଜାଣ କୋବିଦ ଯେ ।
ଲୋକନାଥ ନାମରେ କନିଷ୍ଠ ଭ୍ରାତ
କବିତ୍ୱ ଭକ୍ତିମାର୍ଗେ ମହାପ୍ରଶସ୍ତ ଯେ ।
ପ୍ରଭୁଙ୍କ ସେବାକାର୍ଯ୍ୟେ ତାଙ୍କ ନିଯୁତ
ରାଜଗୁରୁ ପଦ ଦେଲେ ନରନାଥ ଯେ ।
ଗୁଣବନ୍ତ ତ ମୁହିଁ ଜଣା ନଯାଇଁ
ସତେହେଁ ତେତେ ଶକ୍ତି ମୋହର କାହିଁ ଯେ ।
ତଥାପି ଗୁଣିଗଣ ଅନୁସରଣେ
କବିତ୍ୱ କରୁଥାଇ ପଦେ ଚରଣେ ଯେ ।"

ବ୍ରଜନାଥ ବଡ଼ଜେନାଙ୍କର ପିତାଙ୍କର ନାମ ଥିଲା ବାଲୁକେଶ୍ୱର ପଟ୍ଟନାୟକ । ବାଲୁକେଶ୍ୱରଙ୍କର ଚାରିଜଣ ପୁତ୍ର ଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ଗୋପୀନାଥ ପଟ୍ଟନାୟକ । ସେ ଅତ୍ୟନ୍ତ ଧର୍ମ ପରାୟଣ ବ୍ୟକ୍ତି ଥିଲେ । ବାଲୁକେଶ୍ୱରଙ୍କର ଦ୍ୱିତୀୟ ପୁତ୍ର ଥିଲେ ଜଗନ୍ନାଥ ପଟ୍ଟନାୟକ । ସେ ଜଣେ ଗୁଣୀବ୍ୟକ୍ତି ଥିଲେ ଏବଂ ରାଜାଙ୍କଠାରୁ କବିଭୂଷଣ ପଦ ପାଇଥିଲେ । ବ୍ରଜନାଥ ପଟ୍ଟନାୟକ ପିତାଙ୍କର ତୃତୀୟ ପୁତ୍ର । ସେ ରାଜାଙ୍କଠାରୁ ବଡ଼ଜେନା ଉପାଧି ପାଇ ନିଜକୁ ବ୍ରଜନାଥ ବଡ଼ଜେନା ନାମରେ ପରିଚିତ କରାଇଥିଲେ । ବାଲୁକେଶ୍ୱରଙ୍କର ଚତୁର୍ଥ ପୁତ୍ର ଥିଲେ ଲୋକନାଥ ପଟ୍ଟନାୟକ । ସେ ରାଜାଙ୍କଠାରୁ ରାଜଗୁରୁ ପଦ ପାଇଥିଲେ ।

କବି "ଗୋପୀ କଳାପ"ରେ ଅନୁରୂପ ବର୍ଣ୍ଣନା ମଧ୍ୟ ଦେଇଅଛନ୍ତି –

"ଅଟୁ କରଣ ଯେ ଆମ୍ଭେ ଜାତିରେ
ସ୍ଥିର ଧୀଇ କବି ନାନା ଜାତିରେ ।
ଜ୍ୟେଷ୍ଠ ଗୋପୀନାଥ ପଟ୍ଟନାୟକ
ଇଷ୍ଟ ତାଙ୍କର ମାଳାଦ୍ରି ନାୟକ ।
ମଧ୍ୟ ଜଗନ୍ନାଥ ପଟ୍ଟନାୟକ
କବି ଭୂଷଣ ପଦ ତ ନାୟକ ।
ସର୍ବ କନିଷ୍ଠ ନାମ ତ୍ରିଲୋକନାଥ
ରାଜଚକ୍ରବର୍ତ୍ତୀ କଲେ ନରନାଥ ।
ବ୍ରଜନାଥ ବୋଲିଣ ମୋର ଯେ ନାଁ
ରାଜପଦ ଅଟଇ ବଡ଼ଜେନା ।"

ବ୍ରଜନାଥ ବଡ଼ଜେନା କେଉଁ ରାଜାଙ୍କଠାରୁ ବଡ଼ଜେନା ଉପାଧି ପାଇଥିଲେ ତାହା ସେ ସ୍ପଷ୍ଟ ଭାବରେ ପ୍ରକାଶ କରି ନ ଥିଲେ ହେଁ ସେ ତାହା ଢେଙ୍କାନାଳ ରାଜାଙ୍କଠାରୁ ପାଇଥିବାର ଅନୁମାନ କରାଯାଏ । କବି ବ୍ରଜନାଥ ତାଙ୍କ ଜୀବନରେ କାବ୍ୟ-କବିତା, ଚଳୁବାର ସ୍ୱଖ୍ୟାନ୍ତର ସଙ୍ଗୀତ ରଚନା କରି ଅମରତ୍ୱ ଲାଭ କରିଅଛନ୍ତି । ତାଙ୍କ ଜୀବଦ୍ଦଶାରେ ସେ ଦାରିଦ୍ର୍ୟର କଷାଘାତ ସହ୍ୟ କରି ସାରସ୍ୱତ ସାଧନାରେ ମନପ୍ରାଣ ଢାଳି ଦେଇଥିଲେ । ଢେଙ୍କାନାଳର ରାଜାଙ୍କ ଉପରେ ତାଙ୍କୁ ଜୀବନଯାତ୍ରା ନିର୍ଭର କରିବାକୁ ପଡ଼ୁଥିଲା । କୌଣସି କାରଣବଶତଃ କବି ତାଙ୍କ ଜୀବଦ୍ଦଶାରେ ଢେଙ୍କାନାଳର ରାଜାଙ୍କର ଅପ୍ରିୟ ପାତ୍ର ହୋଇ ରାଜ-ଅନୁକମ୍ପାରୁ ବଞ୍ଚିତ ହୋଇଥିଲେ । ସେ ବିଷୟ କବି ରାଜନଙ୍କୁ ଦ୍ରୁତଲୋକ୍ତି ନାମକ ରଚନାରେ ପ୍ରକାଶ କରିଥିଲେ । ଯେହେତୁ କବି ଜୀବନର ଅଧିକାଂଶ ସମୟ ରାଜ ଅନୁକମ୍ପା ଉପରେ ନିର୍ଭର କରିଥିଲେ, ସେହେତୁ ସେ ତାଙ୍କର ବହୁ ରଚନାରେ ରାଜ ପ୍ରଶସ୍ତି

ଗାନ କରିଥିଲେ । ସମର ତରଙ୍ଗ ରଚନାର ମୁଖ୍ୟ ଉଦ୍ଦେଶ୍ୟ ରାଜ ପ୍ରଶସ୍ତି ଗାନ ବୋଲି କହିଲେ ଅସମୀଚୀନ ହେବ ନାହିଁ ।

କବିଙ୍କର ଇହଧାମ ତ୍ୟାଗ କରିବା ସମୟ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଇ ନାହିଁ । ସାରାଜୀବନ ଦାରିଦ୍ର୍ୟର କଷାଘାତ ସହ୍ୟକରି ନିଜକୁ ସାରସ୍ୱତ ସାଧନାରେ ଲିପ୍ତରଖି କବି ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କର ପ୍ରାଣତ୍ୟାଗ ସମୟ ଆନୁମାନିକ ୧୭୯୫ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ ବୋଲି ଗ୍ରହଣ କରାଯାଇଥାଏ ।

## ସମର ତରଙ୍ଗର କଥାବସ୍ତୁ—

୧୭୮୧ ମସିହାରେ ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ସହିତ ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତଙ୍କର ଯେଉଁ ଯୁଦ୍ଧ ହୋଇଥିଲା ସେହି ଯୁଦ୍ଧର ଏବଂ କେନ୍ଦୁଝରର ଢେଙ୍କାନାଳ ଆକ୍ରମଣ ସମୟରେ ଘଟିଥିବା ଯୁଦ୍ଧର ଜୀବନ୍ତ ବର୍ଣ୍ଣନାହିଁ ସମରତରଙ୍ଗ କାବ୍ୟର କଥାବସ୍ତୁ ।

ପ୍ରଥମ ଛାନ୍ଦରେ ଢେଙ୍କାନାଳରେ ଅବସ୍ଥିତ ଓ ରାଜବଂଶର ଗୌରବର ଆଭାସ ଦିଆ ଯାଇଅଛି । ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କର ଗୁଣାବଳୀର ଉଚ୍ଛ୍ୱସିତ ପ୍ରଶଂସା ଏଥିରେ ମଧ୍ୟ ପ୍ରକାଶ ପାଇଅଛି । ସେତେବେଳକୁ ମରହଟ୍ଟା ସୈନ୍ୟମାନେ ଓଡ଼ିଶା ଆକ୍ରମଣ କରି କଟକରେ ଥାଆନ୍ତି । ରାଜା ତ୍ରିଲୋଚନ-ମହୀନ୍ଦ୍ର ବାହାଦୂର ମରହଟ୍ଟାମାନଙ୍କୁ ପେସ୍କସ୍ ନ ଦେବାରୁ ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତ କଟକରୁ ଜଣେ ଧମା

ମଂଜୁ ଚୌଧୁରୀଙ୍କୁ ସଙ୍ଗରେ ନେଇ ଢେଙ୍କାନାଳ ଆକ୍ରମଣ କଲେ । ଢେଙ୍କାନାଳର ସୈନ୍ୟମାନେ ମରହଟ୍ଟା ସୈନ୍ୟମାନଙ୍କୁ ଅତର୍କିତ ଭାବରେ ଆକ୍ରମଣ କରି ପରାସ୍ତ କଲେ । ମରହଟ୍ଟା ସୈନ୍ୟମାନେ ପରାସ୍ତ ହୋଇ କଟକ ଫେରିଗଲେ ଓ ପୁଣି ବର୍ଷାକାଳ ଶେଷହେବାରୁ ସେମାନେ ଢେଙ୍କାନାଳ ଆକ୍ରମଣ କଲେ ।

ଦ୍ୱିତୀୟ ସ୍ତବକରେ ସମର ଉଦ୍ଦେଶ୍ୟରେ ସୈନ୍ୟସଜ୍ଜା ଓ ସୈନ୍ୟମାନଙ୍କର ଗତିବିଧିର ପ୍ରାଂଜଳ ବର୍ଣ୍ଣନା ଦିଆଯାଇଅଛି । ମରହଟ୍ଟାମାନଙ୍କର ସୈନ୍ୟ ସଂଖ୍ୟା ଓ ସାଜସଜ୍ଜା ଦେଖି ଢେଙ୍କାନାଳର ଲୋକମାନେ ଭୀତତ୍ରସ୍ତ ହେଲେହେଁ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ସୈନ୍ୟମାନଙ୍କୁ ଯେଉଁ ଉଦ୍‌ବୋଧନ ବାଣୀ ଶୁଣାଇଥିଲେ ତାହା ତାଙ୍କର ବୀରତ୍ୱର ପରିଚାୟକ ।

ତୃତୀୟ ଓ ଚତୁର୍ଥ ସ୍ତବକରେ ଉଭୟ ପକ୍ଷ ମଧ୍ୟରେ ହୋଇଥିବା ଭୀଷଣ ଯୁଦ୍ଧର ବର୍ଣ୍ଣନା ସ୍ଥାନ ପାଇଅଛି । ମରହଟ୍ଟା ସୈନ୍ୟମାନଙ୍କର ଦୁର୍ଗତି ବିଶେଷ ଭାବରେ ବର୍ଣ୍ଣିତ ହୋଇଅଛି । ଉଭୟ ପକ୍ଷର ବହୁ ସୈନ୍ୟ କ୍ଷୟ ହେବାରୁ ଓ ଯୁଦ୍ଧର କୌଣସି ସମାଧାନ ନ ହେବାରୁ ସନ୍ଧି ପ୍ରସ୍ତାବ ଆଗତ ହେଲା । ଯଦି ତ୍ରିଲୋଚନ ମହୀନ୍ଦ୍ର ବାହାଦୁର ଦୁଇଦିନ ପାଇଁ ଗଡ଼ ଛାଡ଼ି ଅନ୍ୟସ୍ଥାନକୁ ଚାଲି ଯାଆନ୍ତି ତାହାହେଲେ ମରହଟ୍ଟାମାନେ ଯୁଦ୍ଧ ବନ୍ଦ କରିଦେବେ ବୋଲି ସର୍ତ୍ତ ପ୍ରେରଣ କଲେ । ମାତ୍ର ଏ ପ୍ରକାର ସର୍ତ୍ତ ଶ୍ରବଣ କରି ରାଜା ଏଥିରେ ସମ୍ମତି ପ୍ରକାଶ କରିବାକୁ ଉଚିତ ମନେ କଲେ ନାହିଁ ।

ପଞ୍ଚମ ସ୍ତବକରେ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କର ପାତ୍ର ମନ୍ତ୍ରୀମାନଙ୍କ ସହିତ ସନ୍ଧି ପ୍ରସ୍ତାବ ଜନିତ ଆଲୋଚନା ସ୍ଥାନ

ପାଇଅଛୁ । ରାଜା ମରହଟ୍ଟାମାନଙ୍କ ପ୍ରେରିତ ପ୍ରସ୍ତାବରେ ଅସମ୍ମତ ହେଲେ । ମାତ୍ର ତାଙ୍କର ପାତ୍ର ମନ୍ତ୍ରୀମାନେ ସତର୍କତାର ସହିତ ତାଙ୍କୁ ସେ ପ୍ରସ୍ତାବରେ ସମ୍ମତ କରାଇଲେ ।

ଷଷ୍ଠ ଛାନ୍ଦରେ ବର୍ଣ୍ଣିତ ହୋଇଅଛୁ ଯେ ରାଜା ତ୍ରିଲୋଚନ-ମହୀନ୍ଦ୍ର ବାହାଦୂର ଦୁଇଦିନ ପାଇଁ ଗଡ଼ ଛାଡ଼ି ଅନ୍ୟତ୍ର ଯିବାରୁ ସନ୍ଧି ସ୍ଥାପିତ ହେଲା । ଉଭୟ ପକ୍ଷ ମିତ୍ର ଭାବରେ ମିଳିତ ହେଲେ । ଶତ୍ରୁପକ୍ଷ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କର ଅପୂର୍ବ ରଣ କୌଶଳର ଭୂରି ଭୂରି ପ୍ରଶଂସା କଲେ । ଏ ପ୍ରଶଂସା କେନ୍ଦୁଝରର ରାଜା ସହ୍ୟ ନପାରି ଢେଙ୍କାନାଳ ସହିତ ଶତ୍ରୁତା ଆଚରଣ କଲେ । କେନ୍ଦୁଝର ରାଜ୍ୟର ଲୋକମାନେ ସୀମା ପାର୍ଶ୍ୱବର୍ତ୍ତୀ ଢେଙ୍କାନାଳର କେତେକ ଗ୍ରାମକୁ ଲୁଟି କଲେ । ଢେଙ୍କାନାଳ ରାଜା ତାହାର ପ୍ରତିକାର କଲେ । ଫଳରେ ଢେଙ୍କାନାଳ ଓ କେନ୍ଦୁଝର ମଧ୍ୟରେ ଯୁଦ୍ଧ ହେଲା ଓ ଏହି ଯୁଦ୍ଧରେ କେନ୍ଦୁଝର ପରାଜିତ ହେଲା ।

ସପ୍ତମ ଛାନ୍ଦରେ ରାଜା ତ୍ରିଲୋଚନମହୀନ୍ଦ୍ର ବାହାଦୁରଙ୍କର ଗୁଣାବଳୀର ଅଶେଷ ପ୍ରଶଂସା ସ୍ଥାନ ପାଇଅଛି । କବି ନିଜର ବଂଶ ପରିଚୟ ଦେଇ ରାଜ ଅନୁଗ୍ରହ ଭିକ୍ଷା କରିଅଛନ୍ତି ।

## କବିଙ୍କର ବର୍ଣ୍ଣନା-ଶୈଳୀ—

କବି ବ୍ରଜନାଥ ବଡ଼ଜେନାଙ୍କର ସାରସ୍ୱତ ସାଧନାର ସମୟ ଅଷ୍ଟାଦଶ ଶତାବ୍ଦୀ । ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ କାବ୍ୟ ସାହିତ୍ୟର ଅପ୍ରତିହତ ପ୍ରଭାବ କବିଙ୍କ ଉପରେ ସୁସ୍ପଷ୍ଟ । କବିଙ୍କର ଅନ୍ୟାନ୍ୟ ରଚନାରେ ମଧ୍ୟ ଏହି ପ୍ରଭାବର ସୂଚନା ମିଳେ ।

ଏପରିକି ତାଙ୍କର ଗଦ୍ୟସୃଷ୍ଟି ଚତୁର ବିନୋଦରେ ମଧ୍ୟ ଓଡ଼ିଆ କାବ୍ୟଯୁଗର ପ୍ରଭାବ ଲକ୍ଷିତ ହୋଇଥାଏ । ଚତୁର ବିନୋଦ ପାଠ କରିବା ସମୟରେ ବେଳେ ବେଳେ ପାଠକ ମନେକରେ, ସତେ ଯେପରି ସେ ମଧ୍ୟଯୁଗୀୟ କୌଣସି କାବ୍ୟର ଆକ୍ଷରିକ ଗଦ୍ୟ ଅନୁବାଦ ପାଠକରୁଅଛି । ନାୟକ ନାୟିକାଙ୍କର ରୂପ-ବର୍ଣ୍ଣନାରେ, ପ୍ରାକୃତିକ ବର୍ଣ୍ଣନାରେ, ବା ଉପମା ଉପମେୟ ପ୍ରୟୋଗରେ ସତେ ଯେପରି ବ୍ରଜନାଥ କାବ୍ୟ ଯୁଗର ପ୍ରଭାବକୁ ଅତିକ୍ରମ କରିବାକୁ ଅସମର୍ଥ ହୋଇ ଅଛନ୍ତି ।

ସମର ତରଙ୍ଗ ରଚନା କରିବାକୁ ଯାଇ କବି ଦୁଇଟି ଯୁଦ୍ଧର ବର୍ଣ୍ଣନା ଦେଇଅଛନ୍ତି । ମାତ୍ର ଯୁଦ୍ଧର ବର୍ଣ୍ଣନା ମାଧ୍ୟମରେ କବି ଢେଙ୍କାନାଳ ରାଜାଙ୍କର ପ୍ରଶସ୍ତିଗାନ ଯେଉଁ ପରିମାଣରେ କରି ଅଛନ୍ତି ତାହା କାବ୍ୟର ମର୍ଯ୍ୟାଦା ହାନି କରିଅଛି । କାବ୍ୟର ଆରମ୍ଭରେ କବି ଢେଙ୍କାନାଳର ଅବସ୍ଥିତି ଓ ମହତ୍ତ୍ୱ ପ୍ରକାଶ କରିବାକୁ ଯାଇ ମଧ୍ୟଯୁଗୀୟ ଯେ କୌଣସି କବିର ଆଦର୍ଶ ଅନୁସରଣ କରି ଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କର ଯେ କୌଣସି କାବ୍ୟର ନଗର ବର୍ଣ୍ଣନା ସହିତ ସମର ତରଙ୍ଗର ପ୍ରଥମ ଛାନ୍ଦରେ ଥିବା ଢେଙ୍କାନାଳର ବର୍ଣ୍ଣନାକୁ ତୁଳନା କରାଯାଇ ପାରେ ।

କାବ୍ୟର ଆରମ୍ଭରେ କବି ମଧ୍ୟଯୁଗୀୟ ରୀତିରେ ଇଷ୍ଟବନ୍ଦନା କରି ଅଛନ୍ତି । ଓଡ଼ିଶାର ଏକ ଢେଙ୍କାନାଳର ବର୍ଣ୍ଣନା କରିବାକୁ ଯିବାବେଳେ କବି ସିଧା ସଳଖ ଢେଙ୍କାନାଳ ବିଷୟ ବର୍ଣ୍ଣନା ନ କରି ଓଡ଼ିଶାର ପ୍ରସିଦ୍ଧ ଶ୍ରୀକ୍ଷେତ୍ର ବିଷୟ ପ୍ରଥମେ ବର୍ଣ୍ଣନା କରି ଅଛନ୍ତି । ଶ୍ରୀକ୍ଷେତ୍ରର ଉତ୍ତର ଦିଗରେ ଅବସ୍ଥିତ ଢେଙ୍କାନାଳ

ରାଜ୍ୟ ଓ ନଗର  ବର୍ଣ୍ଣନା  କବିଙ୍କ  ଲେଖାମାନେ  ଏକାନ୍ତ  ହୃଦ୍ୟ ହୋଇଅଛି ।

"ଏହି କ୍ଷେମର ମଣ୍ଡଳ ବଗରେ
ଢେଙ୍କାନାଳ ନାମେ ଅଛି ନଗରେ
ଧାତା କଲା ତା ଯତନେ ନିର୍ମାଣ
ରସା ରସିକମା ଶିର ଭୂଷଣ ସେ
କି କହିବା ତାର ଠେକ ଯେ ।
ସୁଖ ବନା ଦୁଃଖ          କି ରୂପେ ହୁଅଇ
ନ ଜାଣନ୍ତି ତହିଁ ଲୋକ ଯେ ।"

କେବଳ ବ୍ରଜନାଥ କୁହନ୍ତି, ଯେ କୌଣସି କବି ବା ଲେଖକର ଆଖିରେ ତାର ଜନ୍ମଭୂମିର ଗୌରବ ସବୁବେଳେ ମହାନ । ଢେଙ୍କାନାଳର ବର୍ଣ୍ଣନାକୁ ଏହି ଦୃଷ୍ଟିରୁ ଗୁରୁତ୍ୱ ଦିଆଯାଇପାରେ । କବିଙ୍କର ଶବ୍ଦ ସଂଯୋଜନା ଏବଂ ବର୍ଣ୍ଣନା ଶୈଳୀ ଏଠାରେ କାବ୍ୟୋଚିତ ହୋଇଅଛି ବୋଲି ନିଃସନ୍ଦେହରେ କୁହାଯାଇ ପାରେ ।

ହିତୀୟ ଖଣ୍ଡରେ କବିଙ୍କର ବର୍ଣ୍ଣନାରେ ସୈନ୍ୟସ୍ଥଳନା ଅତ୍ୟନ୍ତ ଜୀବନ୍ତ ହୋଇଅଛି । ଏହି ବର୍ଣ୍ଣନାକୁ ପାଠ କରିବା ସମୟରେ ମନେହୁଏ, ସତେ ଯେପରି ପାଠକ ସମ୍ମୁଖରେ ସୈନ୍ୟମାନେ ଯୁଦ୍ଧଯାତ୍ରା କରୁଅଛନ୍ତି ।

"ସାତ ଫଉଜ ହେଲେ ତିଆର
ମୁସଦ୍ଦି ମୂଷା ହେଲେ ବାହାର
ପାଗା ସୁଆର କି ସରଦାର
          କି ଜମାଦାର ଯେ ।

ଯେ ଯାହା ମୁଖଛନା ସମ୍ଭାର
ଢୌଲଛ ଯେଣ ହେଲେ ହାଜର
ମଜୁରୁ କର ହୁକୁମ ପାଇ ଯାନ୍ତି ସତ୍ୱର ଯେ
ରଙ୍ଗା ଅଙ୍ଗା ଅଙ୍ଗକୁ ଦିଶେ ସୁନ୍ଦର ଯେ ।
ତାଲକ ପୂର ବାମ ହାଥରେ
ଘଲ କଷିଛି ଦକ୍ଷିଣ କରେ
ଲଲ ପଗଡ଼ି ଭଲ ମାନିଛି
ଶିରକୁ ତାର ଯେ ।”

ସମର ଗୀତକାରେ ଏପରି ଜୀବନ୍ତ ଅଥଚ ସାବଲୀଳ ବର୍ଣ୍ଣନା ସମଗ୍ର ଓଡ଼ିଆ ସାହିତ୍ୟରେ ବିଶେଷତଃ, ମଧ୍ୟ ଯୁଗରେ ଏକାନ୍ତ ବିରଳ । ଯୁଦ୍ଧକ୍ଷେତ୍ରରେ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁର ଯେତେବେଳେ ସୈନ୍ୟମାନଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଉଥିଲେ, ସେତେବେଳର ବର୍ଣ୍ଣନା ଅତ୍ୟନ୍ତ ବାସ୍ତବ ହୋଇଅଛି । ଯୁଦ୍ଧ ସମୟର ବର୍ଣ୍ଣନା ଅତ୍ୟନ୍ତ ପ୍ରାଞ୍ଜଳ ତଥା ଚିତ୍ତାକର୍ଷକ ହୋଇଅଛି । ଭୃଙ୍ଗପୁର ଛାନ୍ଦରେ କବି ଯୁଦ୍ଧ ବର୍ଣ୍ଣନା ଯେପରି ଭାବରେ ଦେଇ ଅଛନ୍ତି ତାହା ଉଲ୍ଲେଖଯୋଗ୍ୟ ।

“ଦୁଇବଳଙ୍କର ମେଣ୍ଟ ପଡ଼ିଲା
ଅତି ପ୍ରବଳ ଲଢ଼ାଇ ଲାଗିଲା ।
ଜଣ ଜଣଙ୍କୁ ଘେର ବନ୍ଦୀକରି
ଡକୁଣିଆ ବେଡ଼ିଲେ ଝିନାସ୍ୱର ।
ଆଡ଼ ହାଣି ରହିଥିଲେ ସମ୍ଭାଳି
ପଶିଗଲା ମରମ ଥାନେ ଗୁଳି ।
ଜୀବ ଯିବାଯାଏ ନୋହି ନିବୃତ
ପିଟୁଅଛି କାହାର ଖଣ୍ଡା ହାଥ ।

ଜଣ ଜଣକେ ସେ ଦ୍ରୋଣ ସମାନେ
ରଣ ଯାଗକଲେ ଅନ୍ତ ସୁମନେ ।
ଗୁଳି ଗଲା ଗଲାନି କା ହୃଦର
ତେବେ ଡାକୁଛି ଭାଇ ମାର ମାର ।
ଗୋଟେ ବସିଲାନି କାହା ମୁଖରେ
ଖଣ୍ଡା ହାଥ ସେ ବାଛୁଛି ପ୍ରଖରେ ।
କାହା ଘୋଡ଼ା ଭାଙ୍ଗି ପଡ଼େ ଧରଣୀ
ଯାଇଁ ଘୁଷୁରି ମିଶୁଅଛି ହାଣି ।
ଗୁଳି ଉପରେ ତ ଗୁଳି ବାଜଲା
ତେଣୁ ପ୍ରାଣ ପ୍ରୟାଣ ହୋଇଗଲା ।"

ଏଠାରେ କବିଙ୍କର ଭାଷା ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଅଛି । ମାତ୍ର ଚତୁର୍ଥ ଛାନ୍ଦରେ କବି ଡେମଣାବାବୁଙ୍କ ମୁଖରେ ସରଦାର-ମାନଙ୍କ ଉଦ୍ଦେଶ୍ୟରେ ଖୋରଠା ଭାଷାରେ ଯେଉଁ ଉଦ୍‌ବୋଧନ ବାଣୀ ପ୍ରୟୋଗ କରିଅଛନ୍ତି ତାହା କାବ୍ୟର ଅଙ୍ଗ ସୌଷ୍ଠବକୁ ହାନି କରିଅଛି । ଯଥୋଚିତ ଭାଷା ପ୍ରୟୋଗ କରିବାରେ କବିଙ୍କର ସ୍ୱାଧୀନତା ଥାଇପାରେ, ମାତ୍ର ସେଥିପାଇଁ ସମୀଚୀନତା ମଧ୍ୟ ଥିବା ଉଚିତ । ଡେମଣାବାବୁ ହିନ୍ଦି ଭାଷା ଭାଷୀ ବ୍ୟକ୍ତି । ତେଣୁ ତାଙ୍କ ମୁହଁରୁ ହିନ୍ଦିଭାଷା ବାହାରିବାରେ ସ୍ୱାଭାବିକତା ଥାଇପାରେ । ମାତ୍ର କାବ୍ୟ ଦୃଷ୍ଟିରୁ ଏ ପ୍ରକାର ସ୍ୱାଭାବିକତା ଅସ୍ୱାଭାବିକତାରେ ପରିଣତ ହୋଇଅଛି । ଓଡ଼ିଆ କାବ୍ୟ ରଚନା କରିବା ସମୟରେ ଯେ କୌଣସି ନାୟକ ନାୟିକାଙ୍କ ମୁଖରେ ଓଡ଼ିଆ ଭାଷା ପ୍ରୟୋଗ ସର୍ବଥା ଉପାଦେୟ ।

ଡେମଣାବାବୁଙ୍କ ମୁଖରେ ଖୋରଠା ଭାଷା ପ୍ରୟୋଗ କରି କବି ସ୍ୱାଭାବିକତା ରକ୍ଷା କରିଅଛନ୍ତି ବୋଲି ଯେଉଁ ସାହିତ୍ୟ

ସମୀକ୍ଷକମାନେ ମତ ପ୍ରକାଶ କରନ୍ତି ସେମାନଙ୍କ ମତ ଏକାବେଳକେ ଯଥାର୍ଥ ନୁହେଁ । ସ୍ୱାଭାବିକତାର ସମୀଚୀନତା ସର୍ବାଦୌ ଲକ୍ଷଣୀୟ । ଉପରୋକ୍ତ ମତ ଯେବେ ଯଥାର୍ଥ ହୁଏ, ତେବେ ଗୋଟିଏ କଥା ଏଠାରେ ଉଦାହରଣ ସ୍ୱରୂପ ସୂଚିତ କରାଯାଇ ପାରେ । ଯଦି ଗୋଟିଏ ଓଡ଼ିଆ କାବ୍ୟରେ କୌଣସି ଇଂରେଜ ବା ପାରସୀ ଚରିତ୍ରଙ୍କୁ ଗ୍ରହଣ କରାଯାଇ ଥାଏ ତେବେ କବି ଓଡ଼ିଆ କାବ୍ୟର କଳେବର ମଧ୍ୟରେ ଚରିତ୍ରମାନଙ୍କ ମୁଖରେ ଇଂରେଜୀ ଭାଷା ବା ପାରସୀ ଭାଷା ପ୍ରୟୋଗ କରି ପାରିବେକି ? ଏଠାରେ ଇଂରେଜୀ ବା ପାରସୀ ଭାଷା ପ୍ରୟୋଗ କରିବାରେ ସ୍ୱାଭାବିକତା ଅଛି ନିଶ୍ଚୟ, ମାତ୍ର ସମୀଚୀନତା କାହିଁ ? ଇଂରେଜୀ ବା ପାରସୀ ଭାଷା ଓଡ଼ିଆ କାବ୍ୟର କଳେବର ମଧ୍ୟରେ ପ୍ରଯୁକ୍ତ ହେଲେ ଓଡ଼ିଆ କାବ୍ୟର ଅଙ୍ଗସୌଷ୍ଠବ ରକ୍ଷା କରାଯାଇ ପାରିବ କି ? ତେଣୁ ଏହି ଦୃଷ୍ଟିରୁ ନେତମଣିବାବୁଙ୍କ ମୁଖରୁ ପ୍ରକାଶ ପାଇଥିବା ଖୋରଠା ଭାଷାର ଉଦ୍‌ବୋଧନ ସମର ତରଙ୍ଗ କାବ୍ୟର ଅଙ୍ଗସୌଷ୍ଠବକୁ ନଷ୍ଟ କରି ଦେଇଅଛି ବୋଲି କୁହାଯାଇ ପାରେ ।

କାବ୍ୟର କଳେବର ମଧ୍ୟରେ କବି ବହୁ ପାର୍ଶୀ ଶବ୍ଦ ପ୍ରୟୋଗ କରି ଅଛନ୍ତି । ଏସବୁ ଶବ୍ଦ ପ୍ରୟୋଗ କେତେକାଂଶରେ କାବ୍ୟକୁ ଦୁର୍ବୋଧ କରି ଦେଇଅଛି । ବ୍ରଜନାଥ ବଡ଼ଜେନା ସମର ତରଙ୍ଗ କାବ୍ୟ ରଚନା କରିବା ସମୟରେ ସେହି ସମୟର ପ୍ରଭାବକୁ ଅସ୍ୱୀକାର କରି ପାରିନାହାନ୍ତି । ସମର ତରଙ୍ଗର ରଚନା ଶୈଳୀରେ କବି ଏକ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରି ଅଛନ୍ତି । ତାହା ହେଉଛି ତାଙ୍କର କାବ୍ୟ ନିର୍ମାଣ କୌଶଳ । ସମର ତରଙ୍ଗରେ ମଧ୍ୟଯୁଗର କାବ୍ୟସାହିତ୍ୟର ପ୍ରଭାବ ସ୍ପଷ୍ଟ । ମାଧ

ସମର ତରଙ୍ଗ କେବଳ ମଧ୍ୟଯୁଗୀୟ ଆଦର୍ଶ ସର୍ବସ୍ୱ ହୋଇନାହିଁ । ଏହା ମଧ୍ୟଯୁଗୀୟ ଆଦର୍ଶ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଆଗାମୀ ଯୁଗର ଆଧୁନିକତାର ସଙ୍କେତ ପ୍ରଦାନ କରିଅଛି । ସମର ତରଙ୍ଗ ମଧ୍ୟ ଯୁଗ ଓ ଆଧୁନିକ ଯୁଗର କାବ୍ୟାଦର୍ଶର ଏକ ବିଲକ୍ଷଣ ଯୁକ୍ତ ସମନ୍ୱୟ ।

ମନେହୁଏ, କବି ସମର ତରଙ୍ଗ ରଚନା କରିବା ସମୟରେ ମଧ୍ୟଯୁଗୀୟ କାବ୍ୟାଦର୍ଶ କବଳରୁ ମୁକ୍ତ ପାଇବା ପାଇଁ ଚେଷ୍ଟିତ ହୋଇ ଅଛନ୍ତି । ମାତ୍ର ତାଙ୍କର ଚେଷ୍ଟା ସମ୍ପୂର୍ଣ୍ଣ ରୂପେ ଫଳବତୀ ହୋଇ ପାରିନାହିଁ । ବିଷୟ ନିର୍ବାଚନ ତାଙ୍କର ମଧ୍ୟଯୁଗୀୟ ଆଦର୍ଶକୁ ଅସ୍ୱୀକାର କରିବାର ଏକ ସାର୍ଥକ ନିଦର୍ଶନ । ମାତ୍ର ଯେତେ ଚେଷ୍ଟା କଲେହେଁ କବି ସମୟର ପ୍ରଭାବକୁ ସମ୍ପୂର୍ଣ୍ଣ ରୂପେ ପରିହାର କରିବାକୁ ସମର୍ଥ ହୋଇ ପାରିନାହାନ୍ତି । କବିଙ୍କର ଏ ପ୍ରଚେଷ୍ଟା ସମୟଦୃଷ୍ଟିରୁ ଯେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଏଥିରେ ସନ୍ଦେହର ଅବକାଶ ନାହିଁ ।

କବିଙ୍କର ରଚନା ଶୈଳୀରେ ମଧ୍ୟଯୁଗୀୟ କାବ୍ୟ ରଚନାର ପ୍ରଭାବ ବିଶେଷ ଭାବରେ ରହିଥିବାର ଲକ୍ଷ୍ୟ କରାଯାଏ । ମଧ୍ୟଯୁଗୀୟ କବିମାନଙ୍କର ଅଳଙ୍କାର ପ୍ରିୟତା ରଚନା ମଧ୍ୟରେ ବିଶେଷ ଭାବରେ ପରିଦୃଷ୍ଟ ହୋଇଥାଏ । କବି ବ୍ରଜନାଥ ବଡ଼ଜେନାଙ୍କ ରଚନାରେ ଅଳଙ୍କାର ପ୍ରିୟତା ଲକ୍ଷ୍ୟ କରିବାର କଥା । ସମର ତରଙ୍ଗର ହସ୍ତୀପୃ ଯୁଦ୍ଧରେ ଶତ୍ରୁ ସୈନ୍ୟମାନଙ୍କର ଆଗମନ ସମୟର ବର୍ଣ୍ଣନାରେ କବି ଲେଖିଛନ୍ତି ।

"ଏମନ୍ତେ ଶୁଣି ସେ ନୃପମଣି ଦୋଷର ପରେ ଚଢ଼ିଲେ କ୍ଷଣି
ନ ବିଶେ ଗଜ ତୁରଙ୍ଗ ପୁଣି କେପାରେ ଗଣି ଯେ

ଦେଖିଲେ ଲୋକ ହୋଇ କାତର   ବୋଲନ୍ତି ଘୋଟି ଆସେ ସାଗର
ଲୋକ ଚଳନ୍ତେ କହନ୍ତି ଦେଖ ତରଙ୍ଗ ପାଣି ଯେ
ଗଜମାନଙ୍କୁ ବୋଲନ୍ତି ଏ ମଗର ଯେ
ଓଟ ନୁହନ୍ତି ଭାସୁଛନ୍ତି କୁମ୍ଭୀର ଯେ ।
ଘୋଡ଼ବା ଅଶ୍ୱ ଚଞ୍ଚଳ ଦୁହିଁ   ବୋଲନ୍ତି ମୀନ ଯାଆନ୍ତି ଡେଇଁ
ଫେଣ ଫରିଏ ମଣନ୍ତି ତହିଁ ଶ୍ୱେତ ଚାମର ଯେ ।
ଉଡ଼ୁଅଛି ଯା ଧଣ୍ଡା ବୈରଖ   ପୁଣି ବୋଲନ୍ତି ମଣିମା ଦେଖ
ଏ କେଡ଼େ କେଡ଼େ ଲହରୀମାନ ଆସୁଛି ଉଠି ଯେ ।
ଗଡ଼ ଶଗଡ଼ ଚଳିବା ଦୁହିଁ   ଯୋଳପ ଫରି ମଣନ୍ତି ସେହି
ତମ୍ବୁମାନଙ୍କୁ ବୋଲନ୍ତି ଦେଖ ବୋହିତ ଏହି ଯେ
ଗୁଣ୍ଡିମାନଙ୍କୁ ସର୍ପ ଫରିଏ ମଣି ସେ
ନଳୀମାନଙ୍କୁ କ୍ଷୁଦ୍ର ମୀନରେ ଗଣି ସେ ।
କେବୋଲେ ଆହେ ହେଲକ ବାଇ   ସାକ୍ଷାତ ସିନ୍ଧୁ ଗର୍ଜି ଆସଇ
ମିଶୁ ଅଛନ୍ତି କେତେ ନକ୍ର ସହିତ ପୁଣି ଯେ ।"

ମଧ୍ୟଯୁଗରେ ସାରସ୍ୱତ ସାଧନା କରିଥିବା କବି ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ଯଦୁମଣି ପ୍ରଭୃତି ସେମାନଙ୍କର କାବ୍ୟ ରଚନାରେ ଯେପରି ରୀତି ଗ୍ରହଣ କରିଅଛନ୍ତି, କବି ବ୍ରଜନାଥ ସେପରି ରୀତି ସିଧାସଳଖ ଗ୍ରହଣ କରି ନାହାନ୍ତି ସତ, ମାତ୍ର ତାଙ୍କ ରଚନାରେ ଯୁଗର ପ୍ରଭାବ ବଶତଃ ସେହି ରୀତି ଅନେକ ସ୍ଥଳରେ ସ୍ୱତଃ ପ୍ରକାଶ ପାଇଅଛି ।

ମଧ୍ୟଯୁଗର କାବ୍ୟ ସାହିତ୍ୟରେ ପ୍ରସଙ୍ଗକ୍ରମରେ ଯୁଦ୍ଧବର୍ଣ୍ଣନା ସ୍ଥାନ ପାଇଅଛି । ମାତ୍ର ନିର୍ଦ୍ଦିଷ୍ଟଭାବରେ ଗୋଟିଏ ଯୁଦ୍ଧକୁ କେନ୍ଦ୍ରକରି କାବ୍ୟ ରଚନା କରିବାର ପ୍ରୟାସ କେବଳ ବ୍ରଜନାଥ ବଡ଼ଜେନା

କରିଅଛନ୍ତି । ବ୍ରଜନାଥଙ୍କର ସ୍ୱକୀୟ କବି ପ୍ରତିଭା ତାଙ୍କ ରଚନା ଶୈଳୀରେ ପ୍ରକାଶ ପାଇଅଛି ।

## ଓଡ଼ିଆ ସାହିତ୍ୟରେ ସମର ବର୍ଣ୍ଣନା :–

ଓଡ଼ିଆ ସାହିତ୍ୟର ଆଦିଯୁଗରେ କବି ସାରଳା ଦାସଙ୍କ ଲେଖନୀରୁ ମହାଭାରତ, ଚଣ୍ଡୀପୁରାଣ ଓ ବିଲଙ୍କା ରାମାୟଣ ପ୍ରକାଶ ଲାଭ କରିଥିଲା । ମହାଭାରତର ବିଶାଳ କଳେବର ମଧ୍ୟରେ ମହାଭାରତ ଯୁଦ୍ଧର ପ୍ରାଞ୍ଜଳ ବର୍ଣ୍ଣନା କବିଙ୍କର ଅପୂର୍ବ କବିତ୍ୱ ଶକ୍ତିର ପରିଚୟ ଦେଇଅଛି । ସାରଳା ଦାସଙ୍କର ସର୍ବଶ୍ରେଷ୍ଠ ସୃଷ୍ଟି ସମର ପ୍ରଧାନ । ମହାଭାରତର କୁରୁପାଣ୍ଡବ ଯୁଦ୍ଧ ବର୍ଣ୍ଣନାରେ ସାରଳା ଦାସ ସଂସ୍କୃତ ମହାଭାରତକୁ ଆକ୍ଷରିକ ଭାବରେ ଅନୁସରଣ କରିନାହାନ୍ତି । ସେଥିରେ ସେ ନିଜର ସ୍ୱାତନ୍ତ୍ର୍ୟ ବହୁସ୍ଥଳରେ ପ୍ରଦର୍ଶନ କରି ଅଛନ୍ତି । ସାରଳା ଦାସଙ୍କର ସାରସ୍ୱତ ସାଧନା ସମୟରେ ସମରର ପ୍ରତ୍ୟକ୍ଷ ପ୍ରଭାବ ତାଙ୍କୁ ପ୍ରଭାବିତ କରିଥିଲା । ଓଡ଼ିଶାର ନରପତି କପିଳେନ୍ଦ୍ର ଦେବ ଦାକ୍ଷିଣାତ୍ୟରେ ସଂଗ୍ରାମରତ ଥିବା ସମୟରେ ସେହି ସଂଗ୍ରାମ ବିଷୟକ ଶୃଙ୍ଖଳିକର ବିବରଣୀ ଦେଶରେ ପ୍ରଚୁରଲାଭ କରିଥିଲା । ସେହି ବିବରଣୀ ଶ୍ରବଣ କରି ସାରଳା ଦାସ ଯେ ତାଙ୍କ ରଚନାରେ ସେହି ପ୍ରକାର ପରିସ୍ଥିତିର ଚିତ୍ରଣ କରିଥିଲେ ଏକଥା ଭାବନେବାରେ କୌଣସି ଅସମୀଚୀନତା ନ ଥାଇପାରେ । ସାରଳା ଦାସଙ୍କର ମହାଭାରତ ବିଷୟ ଆଲୋଚନା କରି ପ୍ରଖ୍ୟାତନାମା ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତପ୍ରକାଶ କରିଅଛନ୍ତି ଯେ, ସାରଳା ଦାସଙ୍କର ମହାଭାରତରେ ବର୍ଣ୍ଣିତ ଯୁଦ୍ଧ, କପିଳେନ୍ଦ୍ର ଦେବଙ୍କର ଦାକ୍ଷିଣାତ୍ୟ ଯୁଦ୍ଧର ସାଙ୍କେତିକ ବର୍ଣ୍ଣନା । ତେଣୁ ସାରଳା ଦାସଙ୍କର

ମହାଭାରତରେ ଅଙ୍କିତ ଜଙ୍ଗଲର ରାଜନୈତିକ ଇତିହାସ ପ୍ରଚ୍ଛନ୍ନ ଭାବରେ ସ୍ଥାନ ପାଇଅଛି ବୋଲି କୁହାଯାଇ ପାରେ ।

ସାରଳା ଦାସଙ୍କର ଚଣ୍ଡୀପୁରାଣରେ ବର୍ଣ୍ଣିତ ଯୁଦ୍ଧର ଶାନ୍ତ ଛନ୍ଦ ପ୍ରକାଶିତ । ଶକ୍ତିଶାଳୀ ମହିଷାସୁରକୁ ପରାସ୍ତ କରିବା ତେତିଶକୋଟି ଦେବତାଙ୍କ ପକ୍ଷରେ ଅସମ୍ଭବ ହେଲା । ମହିଷାସୁରକୁ ବଧ କରିବା ନିମନ୍ତେ ଦେବତାମାନେ ଏକତ୍ରିତ ହୋଇ ଉପାସ୍ୟ ଚିନ୍ତା କରୁଥିବା ସମୟରେ ସେମାନଙ୍କଠାରୁ ଶକ୍ତି ରୂପ ମହାତେଜ ସମ୍ଭୂତ ହେଲା । ଏହି ମହାତେଜରୁ ଆଦିଶକ୍ତି ଚଣ୍ଡୀ ବା ଦୁର୍ଗା ଆବିର୍ଭୂତା ହୋଇ ମହିଷାସୁର ସମେତ ସମସ୍ତ ଅସୁରମାନଙ୍କୁ ନିଧନ କଲେ । ଏହି ଯୁଦ୍ଧ ବର୍ଣ୍ଣନା ଅତ୍ୟନ୍ତ ରୋମାଞ୍ଚକର ।

ବିଲଙ୍କା ରାମାୟଣର ଯୁଦ୍ଧବର୍ଣ୍ଣନା କବିଙ୍କ ଲେଖନୀରେ ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଅଛି । ରାମଚନ୍ଦ୍ରଙ୍କର ବିଲଙ୍କା ରାବଣ ସହିତ ଯୁଦ୍ଧର ଭୟଙ୍କର ରୂପ ସାରଳା ଦାସ ପାଠକଙ୍କ ସମକ୍ଷରେ ଉପସ୍ଥାପିତ କରି ଅଛନ୍ତି । ମାତ୍ର ଏହି ଯୁଦ୍ଧରେ ସୀତାଙ୍କର ସହାୟତା ମୁଖ୍ୟସ୍ଥାନ ଅଧିକାର କରିଅଛି ।

ସାରଳା ଦାସଙ୍କ ପରେ ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଯୁଗରେ ବିଭିନ୍ନ ବୈଷ୍ଣବ କବିମାନଙ୍କ ରଚନାରେ ଭକ୍ତିମୂଳକ କଥାବସ୍ତୁ ପ୍ରକାଶ ପାଇଲା । ପଞ୍ଚସଖା ଯୁଗ ଓଡ଼ିଆ ସାହିତ୍ୟରେ ଏକ ଗୌରବାବହ ପରମ୍ପରା ପ୍ରତିଷ୍ଠିତ କରିଥିଲା । ଏହି ଯୁଗରେ ଓଡ଼ିଆ ସାହିତ୍ୟରେ ପୁରାଣ, କାବ୍ୟ, ବୋଲି, ଓଗାଳ, ଚଉତିଶା, କୋଇଲି ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗରେ ଗୁରୁତ୍ୱପୂର୍ଣ୍ଣ ପରୀକ୍ଷା ନିରୀକ୍ଷା ହୋଇଥିଲା । ପଞ୍ଚସଖା ଯୁଗର ବୟୋଜ୍ୟେଷ୍ଠ କବି ବଳରାମ ଦାସଙ୍କର ଦାଣ୍ଡି ରାମାୟଣରେ ରାମଚନ୍ଦ୍ରଙ୍କର

ତଦନ୍ତ ଯୁଦ୍ଧର ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ରୂପ ପରିଗ୍ରହ କରିଅଛି । ପଞ୍ଚସଖା ଯୁଗର ଭକ୍ତିସାହିତ୍ୟରେ ବର୍ଣ୍ଣିତ ଯୁଦ୍ଧ କେବଳ ପୌରାଣିକ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ ।

ପଞ୍ଚସଖାଯୁଗ ପରେ ଓଡ଼ିଆ ସାହିତ୍ୟରେ ମଧ୍ୟଯୁଗ ବା ଭଞ୍ଜଯୁଗର ସୃଷ୍ଟି । ଏହି ଯୁଗରେ ଓଡ଼ିଆ ସାହିତ୍ୟରେ କାବ୍ୟ ରଚନାର ଏକ ନିର୍ଦ୍ଦିଷ୍ଟ ଆଦର୍ଶ ଦେଖାଗଲା । ତାହା ହେଉଛି ସଂସ୍କୃତ କାବ୍ୟ ସାହିତ୍ୟର ରୀତି ଅନୁସରଣ । ସଂସ୍କୃତ କାବ୍ୟ ସାହିତ୍ୟର ରୀତିକୁ ଅନୁସରଣ କରି ଯୁଗସ୍ରଷ୍ଟା ଉପେନ୍ଦ୍ର ଭଞ୍ଜ ଯେଉଁ ଆଦର୍ଶର ପ୍ରତିଷ୍ଠା କଲେ ତାହା ଅନ୍ୟମାନଙ୍କ ଦ୍ୱାରା ଅନୁସୃତ ହେଲା । ଏହି ଯୁଗର କାବ୍ୟମାନଙ୍କରେ ପୌରାଣିକ କଥାବସ୍ତୁ ତଥା କାଳ୍ପନିକ କଥାବସ୍ତୁ ଗୃହୀତ ହେଲା । ତେଣୁ ପୌରାଣିକ ବା କାଳ୍ପନିକ କଥାବସ୍ତୁ ଉପରେ ଆଧାରିତ କାବ୍ୟ ସମୂହରେ ସମର ବର୍ଣ୍ଣନା ପ୍ରସଙ୍ଗ ସ୍ଥାନ ପାଇଅଛି । ଶ୍ରୀକୃଷ୍ଣଙ୍କର ତଦନ୍ତ ଅସୁର ଅସୁରୁଣୀମାନଙ୍କ ସହିତ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କର ବୀର୍ଯ୍ୟଶକ୍ତି ସୂଚିତ । ଠିକ୍ ସେହିପରି ରାମଚନ୍ଦ୍ରଙ୍କର ତଦନ୍ତ ରାକ୍ଷସମାନଙ୍କ ସହିତ ଯୁଦ୍ଧରେ ରାମଚନ୍ଦ୍ରଙ୍କର ବୀର୍ଯ୍ୟଶକ୍ତି ସୂଚିତ । ଏସବୁ ସମର ବର୍ଣ୍ଣନାରେ ପ୍ରାକୃତିକତାର ଅନୁପାତ ଯଥେଷ୍ଟ କମ୍ ।

ଅଷ୍ଟାଦଶ ଶତାବ୍ଦୀରେ ସାରସ୍ୱତ ସାଧନାରେ ବ୍ରତୀଥିବା କବି ବ୍ରଜନାଥ ବଡ଼ଜେନାଙ୍କ ଉପରେ ସମସାମୟିକ ଯୁଗର ପ୍ରଭାବ ସ୍ୱୀକାର୍ଯ୍ୟ । କବି ବ୍ରଜନାଥ ବଡ଼ଜେନାଙ୍କର ଏହି ସମୟର କାବ୍ୟ ସୃଷ୍ଟିରେ ସର୍ବପ୍ରଧାନ ନୂତନତ୍ୱ ହେଉଛି ତାଙ୍କର କଥାବସ୍ତୁ ଗ୍ରହଣ । ସମର ତରଙ୍ଗର କଥାବସ୍ତୁ ପାଇଁ ସେ ପୁରାଣ ବା କିମ୍ବଦନ୍ତୀ ଉପରେ ନିର୍ଭର ନ କରି ବାସ୍ତବତା ଉପରେ ନିର୍ଭର

କରିଅଛନ୍ତି । ଏପରି ଏକ ପ୍ରଚେଷ୍ଟା କବିଙ୍କର ଏକ ସାହସିକ ପଦକ୍ଷେପ ବୋଲି କୁହାଯାଇ ପାରେ ।

ବ୍ରଜନାଥ ବଡ଼ଜେନା ଏକ ସମରକୁ କେନ୍ଦ୍ରକରି ନିଜର ଅପୂର୍ବ କବିତ୍ୱ ଶକ୍ତିର ଯେଉଁ ପରିଚୟ ପ୍ରଦାନ କରିଥିଲେ ତାହା ତାଙ୍କର ପରବର୍ତ୍ତୀ କବିମାନଙ୍କୁ କେତେକ ପରିମାଣରେ ପ୍ରଭାବିତ କରିଅଛି । ପ୍ରାଚୀନ କାଳର ଯୁଦ୍ଧ ବର୍ଣ୍ଣନାରେ କେବଳ ଯୁଦ୍ଧ ଭୂମିରେ ବୀରମାନଙ୍କ ମଧ୍ୟରେ ଘଟିଥିବା ଯୁଦ୍ଧର ବର୍ଣ୍ଣନା ଦିଆ ଯାଇଥାଏ । ସେଥିରେ ଯୋଦ୍ଧାମାନଙ୍କର ବୀରତ୍ୱର ପ୍ରକାଶ ମୁଖ୍ୟସ୍ଥାନ ଅଧିକାର କରିଥାଏ । ମାତ୍ର ପରବର୍ତ୍ତୀ କାଳର ଯୁଦ୍ଧ-ବର୍ଣ୍ଣନା ମୁଖ୍ୟତଃ ଦୁଇଭାଗରେ ବିଭକ୍ତ ହେଲା (୧) ଯୁଦ୍ଧ ପୂର୍ବରୁ ବା ଯୁଦ୍ଧ ସମୟରେ ଉଦ୍‌ବୋଧନ ବାଣୀ ଓ (୨) ପ୍ରତ୍ୟକ୍ଷ ଯୁଦ୍ଧର ବର୍ଣ୍ଣନା । ସମର ତରଙ୍ଗର କବି ଯୁଦ୍ଧପାଇଁର ତିଆରି ବର୍ଣ୍ଣନା କରିବା ପରେ ଯୁଦ୍ଧ ସମୟରେ ରାଜାଙ୍କ ମୁଖରେ ସୈନିକମାନଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଇ ଅଛନ୍ତି । ପ୍ରତ୍ୟକ୍ଷ ଯୁଦ୍ଧର ବର୍ଣ୍ଣନା କବି ଯେପରି ଭାବରେ ଦେଇ ଅଛନ୍ତି, ତାହା ଅତିବ ଜୀବନ୍ତ ହୋଇଅଛି । ଆଧୁନିକ ଯୁଗର ପ୍ରତିଷ୍ଠିତ କବିବର ରାଧାନାଥଙ୍କର ଶିବାଜୀଙ୍କର ଉତ୍ସାହବାଣୀ ଓ ଅମର୍ଷବାଣୀ ଯୁଦ୍ଧପୂର୍ବରୁ ଦୁଇଗୋଟି ଉଦ୍‌ବୋଧନମୂଳକ ବାଣୀ ।

## ସମର ତରଙ୍ଗର ଯୁଦ୍ଧ-ବର୍ଣ୍ଣନା:—

ଢେଙ୍କାନାଳ ରାଜାଙ୍କ ସହିତ ମରହଟ୍ଟା ସୁବାଦାରଙ୍କର ମନୋମାଳିନ୍ୟ ହେବାରୁ ରାଜାରାମ ପଣ୍ଡିତ ମଞ୍ଜୁ ଚୌଧୁରୀଙ୍କ ସହିତ ସୈନ୍ୟସାମନ୍ତ ଧରି ଯୁଦ୍ଧ କରିବା ନିମନ୍ତେ ଢେଙ୍କାନାଳ

ଯାତ୍ରାକଲେ । ସୈନ୍ୟମାନେ ମୋଟରି ନାମକ ସ୍ଥାନରେ ଶିବିର ସ୍ଥାପନ କଲେ । ଢେଙ୍କାନାଳ ରାଜା ନିଜର ଦେଖୁ ପରିଶୋଧ କରିବା ନିମନ୍ତେ ଇଚ୍ଛାକରି ରାଜାରାମ ପଣ୍ଡିତଙ୍କ ନିକଟକୁ ଉକିଲ ପଠାଇଲେ । ରାଜାଙ୍କର ଉଦ୍ଦେଶ୍ୟ ଥିଲା ଯୁଦ୍ଧ ବନ୍ଦ କରିବା । ମାତ୍ର ରାଜାରାମ ପଣ୍ଡିତ ଏ ପ୍ରସ୍ତାବରେ ଯୁଦ୍ଧ ବନ୍ଦ କରିବାକୁ ରାଜି ନ ହୋଇ ଢେଙ୍କାନାଳ ଆକ୍ରମଣ କରିବାର କୂଟ ଚକ୍ରାନ୍ତ କଲେ । ରାଜା ଏକଥା ଜାଣିପାରି ମରହଟ୍ଟା ସୈନ୍ୟମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବା ଉଦ୍ଦେଶ୍ୟରେ କେତେକ ସୈନ୍ୟ ପ୍ରେରଣ କଲେ । ସେମାନେ ଅତର୍କିତ ଭାବରେ ମରହଟ୍ଟା ସୈନ୍ୟମାନଙ୍କୁ ଆକ୍ରମଣ କରି ପରାସ୍ତ କଲେ ।

"ମାତଙ୍ଗ ଘଣ୍ଟା ଟମକ ନିଶାଣ
ଢାଲ ତରୁଆରି କଟାରି ପୁଣ
ସବୁ ଦେଇ ତେବେ ସନ୍ତୋଷ ନୋହି
ଜୀବନ ଯାଚିଦେଲେ କେହି କେହି ସେ
ଚଢ଼ି କଉଁ କଉଁ ଜନ ଯେ
ଆନନ୍ଦେ ଦିଗାମ୍ବର ବେଗେ ଚଳିଲେ
ପିନ୍ଧାବାସ କରି ଦାନ ଯେ ।"

ଏହିପରି ଭାବରେ ମରହଟ୍ଟା ସୈନ୍ୟମାନେ ପରାଜିତ ହୋଇ ଛତ୍ରଭଙ୍ଗ ଦେଲେ । ମାତ୍ର ମରହଟ୍ଟା ସୁବାଦାର ଏତିକରେ ତାଙ୍କର କର୍ତ୍ତବ୍ୟ ଶେଷ କଲେ ନାହିଁ । ବର୍ଷାଋତୁ ପରେ ପୁଣି ଢେଙ୍କାନାଳ ଆକ୍ରମଣର ବନ୍ଦୋବସ୍ତ ହେଲା । ଏଥର ସୈନ୍ୟମାନଙ୍କର ଅଭିଯାନର ପ୍ରାଞ୍ଜଳ ବର୍ଣ୍ଣନା କବି ଦେଇ ଅଛନ୍ତି । ଶତ୍ରୁ ଙ୍କଠାରୁ ସୈନ୍ୟମାନଙ୍କର ଆଗମନ ବାର୍ତ୍ତା ଶୁଣି ଢେଙ୍କାନାଳରେ ପାଇକ

ପ୍ରସ୍ତୁତ ହେଲେ । ରାଜା ବିଲୋଚନ ମହୀନ୍ଦ୍ର ବାହାଦୁର ନିଜ ଗଡ଼କୁ ରକ୍ଷା କରିବା ପାଇଁ ତୋପ କମାଣ ଖଂଜି ପ୍ରସ୍ତୁତ ହେଲେ । ଗଡ଼ର ଚତୁଃପାର୍ଶ୍ୱରେ ପ୍ରସ୍ତୁତ ହୋଇ ରହିଥିବା ବିଭିନ୍ନ ଯୋଦ୍ଧାମାନଙ୍କ ନିକଟକୁ ଯାଇ ରାଜା ସମସ୍ତଙ୍କର କର୍ତ୍ତବ୍ୟ ବୁଝାଇ ଦେଲେ ।

"କାହା ମୁକୁଟ କଣ୍ଟକ ଯାଇ ପିଠିରେ ଠୁକ ବୋଲନ୍ତି ଭାଇ
ଏହି ସଲଖେ ଥିବୁଟି ଭୁଲି ଅଇଲେ ବାହି ସେ
ହାଥେ ତୋ ଅଛୁ ଯଜ୍ଞ ଜମୁର ପୋଡ଼ିବୁ ଏକା ହୋଇଣ ଧୀର
ହାଥୀ ହୋଇଲେ ନେଉଛି ତେଣେ ଚଢ଼ିବ ଯାଇଁ ସେ
ମନ୍ଦହାସେ କହନ୍ତି ପୁଣି କାହାକୁ ସେ
ସବୁଦିନେ ତ ଠୁକୁଥାଉ ବାହାକୁ ସେ
ଲେକଙ୍କୁ ଭୁଲି ଗୁଣ୍ଡି ଫୁଲାଇ କହୁଛ ଥାଉ ମୁଖ ହଲାଇ
ଦେଖିବା ଦେଖି କେତେ ଟାଣ ତୋ ମନ ଲୁହାକୁ ସେ ।"
( ୧ମ ଛାନ୍ଦ ୨୨ ପଦ )

ରାଜା ବିଲୋଚନ ମହୀନ୍ଦ୍ର ବାହାଦୁର ନିଜର ସୈନ୍ୟମାନଙ୍କୁ କର୍ତ୍ତବ୍ୟ ବିଷୟରେ ସଚେତନ କରାଇ ଦେଇ ପ୍ରତ୍ୟକ୍ଷ ଯୁଦ୍ଧରେ ଲିପ୍ତ ରହିଲେ । ଯୁଦ୍ଧ ସମୟର ବର୍ଣ୍ଣନା ଅତ୍ୟନ୍ତ ବାସ୍ତବ ରୂପ ଧାରଣ କରିଅଛି ।

"ଦଣ୍ଡେ ମାତ୍ରକ ନକରି ବିଶ୍ରାମ
କଲେ ଦେବଙ୍କୁ ଦୁର୍ଲଭ ସଂଗ୍ରାମ ।
ଗୁଳି ଗୋଟିଏ ନ ପଡ଼େ ତଳରେ
ଯାଇ ବସଇ କାହା କପାଳରେ ।

କାହା ଗୁଣ୍ଡରେ ଲଙ୍କାଲେ ବାହାରି
ପେଟ ଅବା ଫୁଟିଯାଏ କାହାରି ।
କଉଁ ଲୋକର ଚଣ୍ଟିଯାଏ ଫୁଟି
ଭାଙ୍ଗି ପକାଏ କାହାର ଛକାଠି ।
ଯାଇଁ ବାଜଇ କାହାର ଗୁଣ୍ଡରେ
ଗୁଣ୍ଡ଼ି ବନ୍ଧୁକ ଲାଗେ ସେ ଅଥିରେ ।
ଭାଙ୍ଗି ପକାଏ କାହାଁ ଜାନୁହାଡ଼
ସେ ଯେ ଘୋଷରେ ହୋଇ ନଡ଼ବଡ଼ ।"

( ଶମ୍ବୁଗୁଣ୍ଡ )

ଏହିପରି ସରଳ ଭାଷାରେ କବି ଯୁଦ୍ଧ ବର୍ଣ୍ଣନାକୁ ଅତ୍ୟନ୍ତ ମନୋଜ୍ଞ କରିଅଛନ୍ତି । ମରହଟ୍ଟା ସୈନ୍ୟମାନେ ଯୁଦ୍ଧକରି ଅଠରଦିନ ପର୍ଯ୍ୟନ୍ତ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ମଧ୍ୟ ଗଡ଼ ଅଧିକାର କରିପାରିଲେ ନାହିଁ । ତାପରେ ସେମାନେ ଏକ ସନ୍ଧିପ୍ରସ୍ତାବ ଆଗତ କଲେଯେ, ରାଜା ଯଦି ଦୁଇଦିନ ପାଇଁ ଗଡ଼ ଛାଡ଼ି ବାହାରକୁ ଚାଲିଯାଆନ୍ତି ତାହେଲେ ସେମାନେ ଯୁଦ୍ଧ ବନ୍ଦ କରିଦେଇ ପାରନ୍ତି । ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ପ୍ରଥମେ ଏ ପ୍ରସ୍ତାବରେ ଅସମ୍ମତ ହେଲେ ; ପାଞ୍ଚ ମନ୍ତ୍ରୀମାନେ ଅତ୍ୟନ୍ତ ସତର୍କତାର ସହିତ ରାଜାଙ୍କୁ ଗଡ଼ ଛାଡ଼ିବାକୁ ସମ୍ମତ କରାଇଲେ । ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ଜଣେ ପ୍ରବଳ ପରାକ୍ରମୀ ବୀର ଥିଲେ ବୋଲି କବି ବର୍ଣ୍ଣନା କରିଅଛନ୍ତି । ମନ୍ତ୍ରଣା ସମୟରେ ରାଜାଙ୍କ ମୁଖରୁ ଯେଉଁ ବାଣୀ ନିସୃତ ହୋଇଅଛି ତାହା ତାଙ୍କର ଅପୂର୍ବ ବୀରତ୍ୱର ପରିଚାୟକ । ରାଜା ତାଙ୍କର ପାଞ୍ଚ ମନ୍ତ୍ରୀମାନଙ୍କର ପରାମର୍ଶ ଶ୍ରବଣ କରି ବୀରର କର୍ତ୍ତବ୍ୟ ବିଷୟରେ ନିଜର ମତ ପ୍ରକାଶ କରିଅଛନ୍ତି ।

"ଫଉଜ ଭିତରେ ଘୋଡ଼ା ଫକାଇ
ମାରେ ବରଛି ଯେ ନିର୍ଭୟ ହୋଇ
ସଞ୍ଚ ପଡ଼ଏ ପଣି ଝାସିପିବ
ଫେରି ଅଇଲେ ତ ସକଳ ଲଭ
ନୋହିଲେ ସେ ମଲେ
ବାସବ ସଙ୍ଗତେ ବସଇ ଭଲେ ।
ହାଥ ଉଠାଇ ଯେ ମଶିବ ବୀର
ତାହାକୁ ମାଝ ସେହି ପଟାନ୍ତର
ଇଣେ ଯା ଅଙ୍ଗ ହୋଏ ଚେନା ଚେନା
ତାହାଶ ଜୀବନ ସୁଫଳ ପିନା
ଯେ ନିସତ ହୋଏ
ପୁରୁଷ ହୋଇଲେ ଅବଳା ପ୍ରାଏ ।"

( ପଞ୍ଚମ ଯୁଦ୍ଧ )

ମରହଟ୍ଟା ସୈନ୍ୟମାନେ ଫେରିଯିବା ପରେ କେନ୍ଦୁଝର ଓ ଢେଙ୍କାନାଳ ମଧ୍ୟରେ ଆଉ ଗୋଟିଏ ଯୁଦ୍ଧର ସୂତ୍ରପାତ ହେଲା । ଢେଙ୍କାନାଳର ଗୌରବ କେନ୍ଦୁଝରବାସୀଙ୍କର ଅସହ୍ୟ ହେଲା । କେନ୍ଦୁଝରର କେତେକ ଲୋକ ସୀମା ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କରେ ପଶି ଲୁଟତରାଜ କଲେ । ଫଳରେ ଢେଙ୍କାନାଳ ଓ କେନ୍ଦୁଝର ମଧ୍ୟରେ ଯୁଦ୍ଧ ଲାଗିଲା । କେନ୍ଦୁଝରର କେତେକ ସୈନ୍ୟ ଆସି ଢେଙ୍କାନାଳରେ ପ୍ରବେଶ କଲେ ଓ ଲଢ଼ାଇରେ କ୍ଷତଗ୍ରସ୍ତ ହୋଇ ପରାଜିତ ହେଲେ । ତାପରେ କେନ୍ଦୁଝର ରାଜା ଆସି ପଳାଶୁଣୀ-ଗଡ଼ଠାରେ ଆଉ ଏକ ଯୁଦ୍ଧ କଲେ, ମାତ୍ର ଏଥିରେ ମଧ୍ୟ ପରାଜିତ ହେଲେ । କେତେଦିନ ପରେ ପୁଣି କେନ୍ଦୁଝର ସୈନ୍ୟମାନେ

ତାମ୍ଭୋଇଠାରେ ଯେଉଁ ଯୁଦ୍ଧ ଜଳେ ସେଥିରେ ପରାଜିତ ହୋଇଥିଲେ ।

"ବେବର୍ତ୍ତା ସେଦନ ମିଶି ଉଦନ୍ତ ଘୋଡ଼ା ବେଲେ ଝାସି
ମାତ ତଳୁଆର ଏକ ଆଖୁଆର ପମଗ୍ର ଦେଲେ ପେଶି ।

ମୁଣ୍ଡତାର କାଟି ଆଣି ଘୋଡ଼ାଇ ଆଣିଲେ ପୁଣି
ଏହିରୂପେ ଯେ ଯେମନ୍ତ ସେହିରୂପେ ଦୁଇଗୁଣ ଗଲେ ହାଣି ।

ପଳାଇଲେ ଗୁଡ଼ ରଣ ନ ଅଣ୍ଟିଲ ଗିରବଣ
କେତେ ଲୋକ ଅବା ଗୁଡ଼ ହାଥିଆର ପଳାଇଲେ ଘେନି ପ୍ରାଣ ।"

ଯେଉଁ ଇଂରେଜ ପରାଜିତ ହୋଇ ସାଙ୍ଗବା ପରେ ସମର ତରଙ୍ଗର ସମର ବର୍ଣ୍ଣନା ଶେଷ ହୋଇଅଛି । ସମର ତରଙ୍ଗର ୭ମ ଗୁନ୍ଦ ପର୍ଯ୍ୟନ୍ତ ସମର ବର୍ଣ୍ଣନା ଅଛି । ୭ମ ଗୁନ୍ଦରେ କବି ରାଜା ହିମ୍ନେତନ ମହାନ୍ ବାହାଦୂରଙ୍କ ବିଷୟରେ ଓ ନିଜ ବିଷୟରେ କେତେକ କଥା ଲେଖିଅଛନ୍ତି ।

ସମର ତରଙ୍ଗର ସମର ବର୍ଣ୍ଣନା ପାଠ କରିବା ସମୟରେ ପାଠକ ମନେକରେ ସେ ଯେପରି ତା ସମ୍ମୁଖରେ ସେ ସମରର ପ୍ରତ୍ୟକ୍ଷ ଚିତ୍ର ଉନ୍ମୋଚିତ ହୋଇ ପଡ଼ିଅଛି । କବିଙ୍କର ବର୍ଣ୍ଣନା ଶୈଳୀର ଏହା ହିଁ ସାର୍ଥକତା । ଏହି ସମରରେ କୌଣସି ଦୈବୀଶକ୍ତିର ପ୍ରଭାବ ନାହିଁ । ଏହା କେବଳ ବାସ୍ତବ ସମର । ତେଣୁ ଏହା ଏକାନ୍ତ ଜୀବନ୍ତ ଓ ହୃଦ୍ୟ ହୋଇ ପାରିଅଛି । ଏ ପ୍ରକାର ସମର ବର୍ଣ୍ଣନା ସମଗ୍ର ଓଡ଼ିଆ ସାହିତ୍ୟରେ ବିରଳ ।

## ସମର ତରଙ୍ଗ—ନାମକରଣ—

କବି ତାର ମାନସ ସନ୍ତାନର ନାମକରଣ ଅତ୍ୟନ୍ତ ସତର୍କତାର ସହିତ କରିଥାଆନ୍ତି । କବି ଏଥିପାଇଁ ଯେବେ ସତର୍କତା ଅବଲମ୍ବନ ନ କରି ଯାହା ତାହା ନାମ କରଣ କରିଦିଅନ୍ତି, ତାହାହେଲେ କବିଙ୍କର ପାରଦର୍ଶିତାର ଅଭାବ ପରିଦୃଷ୍ଟ ହୁଏ । କାବ୍ୟ, କବିତା, ଗଳ୍ପ, ଉପନ୍ୟାସ ବା ନାଟକ ଯେ କୌଣସି ସୃଷ୍ଟିର ନାମକରଣ ସ୍ରଷ୍ଟା ପକ୍ଷରେ ଏକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ।

ଶିଶୁଟିଏ ଜନ୍ମହେବା ପରେ ତାର ନାମକରଣ କରିବା ସମୟରେ ପିତା-ମାତା ବା ଜ୍ଞାତି-ପରିଜନମାନେ ଭଲ ନାମଟିଏ ବାଛି ଦେଇ ଥାଆନ୍ତି । ଏହି ନାମ ଦେବା ସମୟରେ କେବଳ ଭଲ ନାମ ବାଛିବା ହିଁ ସାରକଥା । ନାମଟି ଭଲ ଶୁଭିଲେ ହେଲା । ଏହି ନାମ ସହିତ ଶିଶୁର କୌଣସି ଗୁଣଗତ ସମ୍ପର୍କ ନ ଥାଏ । ତେଣୁ "ସାଧୁ" ନାମ ଦିଆ ଯାଇଥିବା ଶିଶୁ ତାର ପରିଣତ ବୟସରେ "ଦସ୍ୟୁ"ରେ ପରିଣତ ହେବାରେ କୌଣସି ଅସ୍ୱାଭାବିକତା ନାହିଁ । ମାତ୍ର କାବ୍ୟ, କବିତା ବା ଗଳ୍ପ ଉପନ୍ୟାସ କ୍ଷେତ୍ରରେ ଏକଥା ସ୍ୱତନ୍ତ୍ର । ପୁସ୍ତକରେ ଯେଉଁ ବିଷୟ ଲେଖା ଯାଇଅଛି ତାହାକୁ କେନ୍ଦ୍ର କରି ପୁସ୍ତକର ନାମକରଣ କରାଯାଏ । ବିଷୟ ବସ୍ତୁ ସହିତ ନାମର ସମ୍ପର୍କ ଅବିଚ୍ଛେଦ୍ୟ । ଯଦି ବିଷୟ-ବସ୍ତୁ ସହିତ ପୁସ୍ତକର ନାମକରଣର କୌଣସି ସାମଞ୍ଜସ୍ୟ ରକ୍ଷିତ ନ ହୁଏ ତାହାହେଲେ ପୁସ୍ତକର ମହତ୍ତ୍ୱ ରକ୍ଷିତ ହୋଇ ପାରିବ ନାହିଁ । ତେଣୁ କବି ବା ଲେଖକ ତାର ପୁସ୍ତକର ବିଷୟବସ୍ତୁ ଅନୁସାରେ ନାମକରଣ କରିଥାଆନ୍ତି । ଅନେକ ସମୟରେ କବି ବା ଲେଖକ ପୁସ୍ତକ ରଚନା କରିବା ପୂର୍ବରୁ ତାର ନାମ ସ୍ଥିରକରି

ଦେଇଥାଆନ୍ତି । ତେଣୁ ପୁସ୍ତକର ନାମକରଣ ସେମାନଙ୍କ ନିକଟରେ ଆଜି ସମସ୍ୟା ରୂପେ ଦେଖାଦେଇ ପାରେ ନାହିଁ ।

କାବ୍ୟ କବିତାର ନାମକରଣ ପୁଣି ସିଧା ସଳଖ ଭାବରେ କରିଦେବା କବିଜନୋଚିତ କାର୍ଯ୍ୟ ନୁହେଁ ବୋଲି ମଧ୍ୟଯୁଗୀୟ କବିମାନେ ଭାବୁଥିଲେ । ନାମକରଣରୁ କବିଙ୍କ ରୁଚିଭଙ୍ଗୀ ମଧ୍ୟ ପ୍ରକାଶ ପାଇବା ଉଚିତ । ଏହି ଦୃଷ୍ଟିରୁ ମଧ୍ୟଯୁଗର କାବ୍ୟ ସାହିତ୍ୟର ନାମକରଣ ପ୍ରତି ଦୃଷ୍ଟି ନିକ୍ଷେପ କରାଯାଇ ପାରେ । ଉପେନ୍ଦ୍ର ଭଞ୍ଜଙ୍କର ରାମ ଚରିତ ବର୍ଣ୍ଣିତ କାବ୍ୟକୁ "ରାମ ଚରିତ" ନାମ ନ ଦେଇ "ବୈଦେହୀଶ ବିଳାସ" ନାମ ଦେବାରେ ଏହି ତାତ୍ପର୍ଯ୍ୟ ରହିଅଛି । ଉତ୍କଳର ଗଜପତିଙ୍କର ଦରବାରରେ ଉପେନ୍ଦ୍ର ଓ ଦୀନକୃଷ୍ଣଙ୍କର ମିଳନ ଯେବେ ସତ୍ୟ ହୁଏ, ତେବେ ଆମକୁ ଗ୍ରହଣ କରିନେବାକୁ ପଡ଼ିବ ଯେ ନାମକରଣ ପାଇଁ ମଧ୍ୟଯୁଗର କବିମାନେ କେତେଦୂର ସତର୍କ ଥିଲେ । ଉତ୍କଳର ଗଜପତିଙ୍କର ଦରବାରରେ ରସକଲ୍ଲୋଳ ପୋଥିଟି ନେଇ ଦୀନକୃଷ୍ଣ ଯେଉଁଦିନ ଉପସ୍ଥିତ ହେଲେ, ସେଦିନ ସେଠାରେ ଉପେନ୍ଦ୍ର ଭଞ୍ଜ ମଧ୍ୟ ଉପସ୍ଥିତ ଥିଲେ । ଶୁଣାଯାଏ, ଦୀନକୃଷ୍ଣ ରସକଲ୍ଲୋଳ ପୋଥି ତଳେ ଗୋଟିଏ ସରୁ ରଶି ଓ ଉପରେ କେତେଗୁଡ଼ିଏ କଅଁଳିଆ କେନ୍ଦୁପତ୍ର ଘୋଡ଼ାଇ ଦୁଇହାତରେ ପୋଥିଟିକୁ ଧରି ପ୍ରବେଶ କଲେ । ଏପରି ଭାବରେ ପୋଥିଟିକୁ ଆଣିବାର କାରଣ ତାଙ୍କୁ ପ୍ରଶ୍ନ ହେବାରୁ ସେ ଉତ୍ତରରେ କହିଥିଲେ ଯେ, ପୋଥିରେ ରସର କଲ୍ଲୋଳ ଉଠିଛି । ରସ ହୁଏତ ଝରିପଡ଼ିବାର ଆଶଙ୍କା କରି ତଳେ ସରିଟିଏ ରଖାଯାଇଅଛି । ପୁଣି ଉପରେ କଅଁଳିଆ କେନ୍ଦୁପତ୍ର ଘୋଡ଼ାଇବାର କାରଣ,

ଶ୍ରୀକୃଷ୍ଣ ଓ ଗୋପାଙ୍ଗନାଙ୍କର ପ୍ରୀତିକୁ କେନ୍ଦ୍ର କରି ଯେଉଁ ଶୃଙ୍ଗାର ରସ ଏହି ପୋଥିରେ କଲ୍ଲୋଳ ସୃଷ୍ଟି କରୁଛି ତାହାକୁ ସୂର୍ଯ୍ୟ କିରଣ ଦାଉରୁ ରକ୍ଷା କରିବା । ଘନକୃଷ୍ଣଙ୍କର ଏହି ଉତ୍ତର ରସକଲ୍ଲୋଳର ନାମକରଣର ସାର୍ଥକତା ପ୍ରତିପାଦନ କରିଅଛି ।

ପୁସ୍ତକର ନାମକରଣ କ୍ଷେତ୍ରରେ କବିମାନେ ଅନେକ ସମୟରେ ପ୍ରଭାବିତ ହେବାର ମଧ୍ୟ ଦେଖାଯାଏ । ମଧ୍ୟଯୁଗର କବିମାନଙ୍କ ଉପରେ ଏପରି ପ୍ରଭାବ ସ୍ପଷ୍ଟଭାବରେ ପରିଲକ୍ଷିତ ହୋଇଅଛି । ଠିକ୍ ସେହିପରି ରସକଲ୍ଲୋଳର ନାମକରଣର ପ୍ରଭାବ ସମର ତରଙ୍ଗର ନାମକରଣରେ ଅସ୍ୱୀକାର କରାଯାଇ ନ ପାରେ । ସମର ତରଙ୍ଗର ନାମକରଣରେ ଅନ୍ୟ କାବ୍ୟର ନାମକରଣର ପ୍ରଭାବ ଥିଲେ ହେଁ ସମର ତରଙ୍ଗର ନାମକରଣର ଯାଥାର୍ଥ୍ୟ ପ୍ରତିପାଦିତ ହୋଇଅଛି ।

ସମର ତରଙ୍ଗର ନାମକରଣର ଯାଥାର୍ଥ୍ୟ ଦୁଇଟି ଦୃଷ୍ଟିରୁ ନିରୂପଣ କରାଯାଇ ପାରେ । ଗୋଟିଏ ହେଉଛି ଢେଙ୍କାନାଳ ଉପରେ ଗୋଟିକ ପରେ ଗୋଟିଏ ଆକ୍ରମଣ ଜନିତ ସମର-ତରଙ୍ଗ । ଅନ୍ୟଟି ହେଉଛି ଢେଙ୍କାନାଳର ସଂଘଟିତ ସମରରେ ସାମରିକ ଆକ୍ରମଣ ପ୍ରତିଆକ୍ରମଣର ତରଙ୍ଗ ବା ଯୁଦ୍ଧ କ୍ଷେତ୍ରରେ ଘଟିଥିବା ସଂହାର ନିଃସ୍ୱାର ତରଙ୍ଗ ।

ପ୍ରଥମରେ, ଢେଙ୍କାନାଳ ଉପରେ ମରହଟ୍ଟାମାନଙ୍କର ଆକ୍ରମଣ ଓ ପ୍ରତ୍ୟାବର୍ତ୍ତନ । ତାପରେ ପୁଣିଥରେ ବର୍ଷାଋତୁ ଶେଷରେ ମରହଟ୍ଟାମାନଙ୍କର ଢେଙ୍କାନାଳ ଆକ୍ରମଣ ଓ ଯୁଦ୍ଧ । ମରହଟ୍ଟା ସୈନ୍ୟମାନେ ଫେରିଯିବା ପରେ କେନ୍ଦୁଝର ସହିତ ଦୁଇଥର

ଯୁଦ୍ଧ । ଏହିସବୁ ଯୁଦ୍ଧକୁ ଏକଢ଼ ଭାବରେ ଗୋଟିଏ ଗ୍ରନ୍ଥରେ ରଚନା କରିବା ଯୋଗୁଁ କବି ଏପରି ନାମକରଣ କରିଅଛନ୍ତି । ଦ୍ୱିତୀୟରେ, ଢେଙ୍କାନାଳ ଓ ମରହଟ୍ଟାମାନଙ୍କ ମଧ୍ୟରେ ଘଟିଥିବା ଯୁଦ୍ଧକଥା ବିସ୍ତାର କଲେ, ଯୁଦ୍ଧକ୍ଷେତ୍ରରେ ଯେପରି କଟାଳ ହିଂସ୍ରା ଘଟି ପାଇଥିଲା ତାହାକୁ ଲକ୍ଷ୍ୟକରି କବି ଏପରି ନାମକରଣ କରିପାରି ଥାଆନ୍ତି । ଦ୍ୱିତୀୟ କାରଣ ଅପେକ୍ଷା ପ୍ରଥମ କାରଣଟି ବିଶେଷ ପରିମାଣରେ ଯଥାର୍ଥ ହୋଇଅଛି ।

ସମର ତରଙ୍ଗରେ କବି ମୁଖ୍ୟତଃ ବୀର ରସାଶ୍ରୟୀ ବର୍ଣ୍ଣନା କରିଥିବାରୁ ତାହାର ଭାବ ବୁଝିବା ପାଇଁ କେବଳ ବୀରହିଁ ସମର୍ଥ ବୋଲି କବି ପ୍ରକାଶ କରି ଅଛନ୍ତି । ସେଥିପାଇଁ କବି ସମର ତରଙ୍ଗର ସପ୍ତମଛାନ୍ଦର ଆରମ୍ଭରେ ଲେଖିଅଛନ୍ତି,

"ସମର ତରଙ୍ଗ ଏ ଗୀତର ନାମ
ଯେ ମରଦ ଲୋକ ସେ ଏହା ଘେନମ ।"

କବିଙ୍କର ଏପରି ଉକ୍ତିର ବିଶେଷତ୍ୱ ରହିଅଛି । ସମର ତରଙ୍ଗକୁ ପାଠକରି ତାହାର ଭାବକୁ ହୃଦୟଙ୍ଗମ କରିବା ନିମିତ୍ତ କବି ଏକ ନିର୍ଦ୍ଦିଷ୍ଟ ବୀରପୁରୁଷଙ୍କୁ ଶ୍ରେଣୀଭୁକ୍ତ କରି ଅଛନ୍ତି । ଏହାର କାରଣ ସହଜରେ ଅନୁମାନ କରିଯାଇ ପାରେ । ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଆ କାବ୍ୟ ସାହିତ୍ୟ ଯେତେବେଳେ ରାଧାକୃଷ୍ଣଙ୍କ ପ୍ରେମ ବା କାଳ୍ପନିକ ଯୁବରାଜ ରାଜକନ୍ୟାମାନଙ୍କର ପ୍ରେମ ଚରିତକୁ ଅବଲମ୍ବନ କରି ଆଦିରସରେ ଭରପୂର; ସେତେବେଳେ ଗୋଟିଏ ସମର ବିଷୟକ କାବ୍ୟସୃଷ୍ଟି ଓଡ଼ିଆ ସାହିତ୍ୟରେ ଏକ ବ୍ୟତିକ୍ରମ । ତେଣୁ ସାଧାରଣ ପାଠକ ସମାଜ ସେ ସମୟରେ ଏହାକୁ ଗ୍ରହଣ କରିପାରନ୍ତି ବା ନ ପାରନ୍ତି; ଏହା ଭାବି କବିଙ୍କର ଏକ ସ୍ଥିର

ନିର୍ଦ୍ଦେଶ ଦେବାକୁ ସମର୍ଥ ହୋଇଅଛି । ବୈଷ୍ଣବ କବିମାନେ ଯେପରି ସେମାନଙ୍କର କାବ୍ୟରସ ଗ୍ରହଣ କରିବାଲାଗି ପଣ୍ଡିତ, ବୈଷ୍ଣବ-ତତ୍ତ୍ୱଦର୍ଶୀପାଠକଙ୍କୁ କେବଳ ଯୋଗ୍ୟବୋଲି ପ୍ରକାଶ କରିଅଛନ୍ତି; କବି ବ୍ରଜନାଥ ସେହିପରି ସମର ବିଷୟକ କାବ୍ୟକୁ ପାଠକରି କାବ୍ୟରସ ଆସ୍ୱାଦନ ନିମିତ୍ତ କେବଳ ବୀରପୁରୁଷମାନେ ଯୋଗ୍ୟ-ବୋଲି ନିର୍ଦ୍ଦେଶ ଦେଇଅଛନ୍ତି ।

## ସମର ତରଙ୍ଗରେ ରାଜପ୍ରଶସ୍ତି:—

ସମର ତରଙ୍ଗର ସମଗ୍ର କଳେବର ମଧ୍ୟରେ କବି ଯେଉଁଠାରେ ସୁବିଧା ପାଇଅଛନ୍ତି ସେଠାରେ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କର ପ୍ରଶଂସାରେ ଶତମୁଖ ହୋଇ ଉଠିଛନ୍ତି । କବି ରାଜପ୍ରଶସ୍ତି ଗାନ କରିବା ମୂଳରେ ଯେ କିଛି କାରଣ ନାହିଁ, ଏକଥା କୁହାଯାଇ ପାରିବ ନାହିଁ । ରାଜାନୁଗ୍ରହ ଲାଭ ଉଦ୍ଦେଶ୍ୟ ଏହାର କାରଣ ହୋଇପାରେ ।

କାବ୍ୟର ଆରମ୍ଭରେ କବି ଢେଙ୍କାନାଳର ଅବସ୍ଥିତି ବିଷୟରେ ସୂଚନା ପ୍ରଦାନ କରିସାରିବା ପରେ ଢେଙ୍କାନାଳର ରାଜବଂଶର ପରିଚୟ ପ୍ରଦାନ କରିଅଛନ୍ତି । ପ୍ରଥମ ଛାନ୍ଦର ତୃତୀୟ ପଦଠାରୁ ଷଷ୍ଠପଦ ପର୍ଯ୍ୟନ୍ତ ଢେଙ୍କାନାଳର ରାଜବଂଶର ପରିଚୟ ଦେଇ କବି ସପ୍ତମ ପଦଠାରୁ ଏକାଦଶ ପଦ ପର୍ଯ୍ୟନ୍ତ ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ପ୍ରଶଂସାଗାନ କରିଅଛନ୍ତି । ସପ୍ତମ ପଦରେ କବି ପ୍ରକାଶ କରି ଅଛନ୍ତି,

"ସୋମ ବଂଶରେ ଯଥା ପସିଦ୍ଧିତ
ପାଣ୍ଡବେ ଯୁଧିଷ୍ଠିର ଯେଉଁମତ

ସିଂହ ବିଦ୍ୟାଧର କୁଳେ ହେମନ୍ତ
ଉଦୟେ ମହାପାତ୍ର ସୂରବନ୍ଧ ସେ
ତ୍ରିଲୋଚନ ନାମେ ଖ୍ୟାତ ଯେ
ରାଜା ମହୀନ୍ଦ୍ର ବା          ହାଦୁର ପଦ ପା
ସଂସାର ମଧ୍ୟେ ବିଖ୍ୟାତ ଯେ ।"

ଏହିପରି ପ୍ରଶଂସାବାକ୍ୟ ଏକାଦଶ ପଦ ପର୍ଯ୍ୟନ୍ତ ରହିଅଛି । ବିଂଶତ୍ୟ ଛାନ୍ଦରେ କବି ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କ ମୁଖରୁ ବୀରୋଚିତ ବାଣୀ ଶୁଣାଇ ଅଛନ୍ତି । ଯୁଦ୍ଧଲାଗି ରାଜାଙ୍କର ଉଦ୍‌ବୋଧନ ଏଠାରେ ଲକ୍ଷ୍ୟ କରିବାର କଥା । ପଞ୍ଚମ ଛାନ୍ଦରେ କବି ରାଜାଙ୍କ ମୁଖରେ କ୍ଷତ୍ରିୟ-ଧର୍ମ ଓ ବୀରର କର୍ତ୍ତବ୍ୟ ବିଷୟରେ ଯେଉଁ ବାକ୍ୟଗୁଡ଼ିକ ପ୍ରୟୋଗ କରିଅଛନ୍ତି ତାହା ରାଜାଙ୍କ ଚରିତ୍ରର ମହନୀୟତା ଓ ବୀରତ୍ୱ ପ୍ରକାଶ କରେ । ଯେତେବେଳେ ମରହଟ୍ଟା ପକ୍ଷରୁ ପ୍ରସ୍ତାବ ଆସିଲା ଯେ ରାଜା ଯଦି ଦୁଇଲକ୍ଷ ପାଇଁ ଗଡ଼ ଛାଡ଼ି ବାହାରିଯିବେ ତାହାହେଲେ ସେମାନେ ଯୁଦ୍ଧ ବନ୍ଦ କରିପାରନ୍ତି; ସେତେବେଳେ ରାଜାଙ୍କର ପାତ୍ରମନ୍ତ୍ରୀମାନେ ଗଡ଼ ଛାଡ଼ିବାଲାଗି ରାଜାଙ୍କୁ ପରାମର୍ଶ ଦେଲେ । ମାତ୍ର ରାଜ ଏ ପ୍ରସ୍ତାବକୁ ଅନୁମୋଦନ କରି ପାରିଲେ ନାହିଁ । ରାଜା ସେମାନଙ୍କୁ କହିଥିଲେ,

"ହଥିଆର ବାନ୍ଧିଥିବା ଲୋକର
ମରିବାକୁ ଯେବେ ହୋଇବ ଡର
ହଥିଆର ଛାଡ଼ି ଖେତ କମାଉ
ତେବେ ତାହାକୁ କରିବା କି ଆଉ
ନିର୍ଲଜ୍ଜ ଜୀଇବା
କ୍ଷତ୍ରିଙ୍କ ଶୋଭା ରଣେ ପ୍ରାଣ ଦେବା ।"

ଏହିପରି ଭାବରେ ରାଜା ବିଶ୍ୱେଚନ ମହୀନ୍ଦ୍ର ବାହାଦୁର ତାଙ୍କର ପ୍ରଧାନମନ୍ତ୍ରୀଙ୍କୁ ଉତ୍ତେଜନାପୂର୍ଣ୍ଣବାଣୀ ଶୁଣାଇ ଅଛନ୍ତି । ମାତ୍ର ତାଙ୍କର ଅନିଚ୍ଛା ସତ୍ତ୍ୱେ ଅନ୍ୟମାନଙ୍କର ଇଚ୍ଛାକ୍ରମେ ତାଙ୍କୁ ଦୁଇଦିନ ପାଇଁ ଗଡ଼ ଛାଡ଼ିବାକୁ ପଡ଼ିଲା ।

ସପ୍ତମସର୍ଗଠାରୁ କବି ନବମସର୍ଗ ପର୍ଯ୍ୟନ୍ତ ରାଜା ବିଶ୍ୱେଚନ ମହୀନ୍ଦ୍ର ବାହାଦୁରଙ୍କର ପ୍ରଶଂସାଗାନ କରିଅଛନ୍ତି । ଏହି ପ୍ରଶଂସା ଏପରି ଅତିରଞ୍ଜିତ ହୋଇଅଛି ଯେ ଏହାକୁ ପାଠକରି ଯେକୌଣସି ପାଠକ କବିଙ୍କର ଉଦ୍ଦେଶ୍ୟ ବିଷୟରେ ଅବଗତ ହୋଇପାରିବ ।

"ମନ୍ଦରଗିରି ପରି ଅତି ନିଶ୍ଚଳ
ଚନ୍ଦ୍ରର କଳାପ୍ରାଏ ଶାନ୍ତ ଶୀତଳ ଯେ ।
ଶୋଭାରେ ଜାତ କିବା ନବୀନ କାମ
ପ୍ରଭାରେ ଚଣ୍ଡକର ତେଜ ଯା ସମ ଯେ ।
ଦାନରେ କଳିରାଜା ଉପମା ଦେଇ
ମାନରେ ପର୍ଶୁରାମ ପରାଏ କହି ଯେ ।
ସ୍ନେହରେ ଲବଣୀରୁ ଅଧିକ କୋମଳ
କ୍ରୋଧରେ କିବା ଜଳୁଥାଇ ଅନଳ ଯେ ।"

ଉପରୋକ୍ତ ପଦ୍ୟାଂଶରେ କବିଙ୍କର ବର୍ଣ୍ଣନାର ଅତିରଞ୍ଜନ ଲକ୍ଷ୍ୟ କରିବାର କଥା । ଏପରି ଅତିରଞ୍ଜିତ ପ୍ରଶସ୍ତିଗାନ କରିବା ପରେ କବି ନିଜର ନିବେଦନ ପ୍ରକାଶ କରିଅଛନ୍ତି । ସେହି ନିବେଦନରୁ କବିଙ୍କର ଉଦ୍ଦେଶ୍ୟ ସ୍ପଷ୍ଟଭାବରେ ପ୍ରକାଶ ପାଇଅଛି । ରାଜାଙ୍କୁ ତୋଷାମୋଦ ନ କଲେ ତାଙ୍କର ଉଦ୍ଦେଶ୍ୟ ପୂରଣ ହେବା ଅସମ୍ଭବ ।

## ସମର ତରଙ୍ଗରେ କବି ଜୀବନର ପ୍ରତିଫଳନ—

କବି ବ୍ରଜନାଥ ବଡ଼ଜେନା ସମର ତରଙ୍ଗରେ ନିଜର ପରିଚୟ ପ୍ରଦାନ କରି ଅଛନ୍ତି । କେବଳ ଏହି ପରିଚୟ ପ୍ରଦାନ କରିଥିଲେ କବିଙ୍କର ମହତ୍ତ୍ୱ ଯେତିକ ପ୍ରକାଶ ପାଇ ପାରିଥାଆନ୍ତା ସେତିକ ଯଥେଷ୍ଟ ହୋଇ ଥାଆନ୍ତା । ମାତ୍ର କବି ନିଜର ନିବେଦନ ପ୍ରକାଶ କରିବାକୁ ଯାଇ ଯେପରି ଭାବରେ ରାଜପ୍ରଶସ୍ତି ଗାନ-କରିଅଛନ୍ତି ତାହା ତାଙ୍କର ମର୍ଯ୍ୟାଦାକୁ କ୍ଷୁଣ୍ଣ କରିଅଛି । କବିଙ୍କୁ ଏହି ଦୃଷ୍ଟିରୁ କେହି ଆକ୍ଷେପ କରିପାରେ ଭାବି, କବି ଏ ବିଷୟରେ ସତର୍କ ହୋଇ ନିଜର ଉକ୍ତି ପ୍ରକାଶ କରିଅଛନ୍ତି । ମାତ୍ର ତାଙ୍କର ଏ ପ୍ରକାର ଉକ୍ତିର କୌଣସି ଯାଥାର୍ଥ୍ୟ ନାହିଁ । କବି ଲେଖିଛନ୍ତି,

"କବିମାନେ ମିଛେ ହେଁ ଗୀତ ବୋଲନ୍ତି
କାର୍ଯ୍ୟ ଲଭିବାକୁ କେ ସ୍ତୁତି କରନ୍ତି ଯେ ।
ଶ୍ରୀଗୁମ୍ଫ କଥା ମୋର ନୋହେ ଏମନ୍ତ
ଅନ୍ତର୍ଯ୍ୟାମୀ ତ ଜାଣୁଥିବେ ମୋ ଚିତ୍ତ ଯେ ।
ଘନନାଦ ଶୁଣିଲେ ଯେସ୍ନେ ମୟୂର
ଆନନ୍ଦେ ନୃତ୍ୟକରେ ହୋଇ ଅଧୀର ଯେ ।
ସେ ରୂପେ ଗୁମ୍ଫ କାର୍ଯ୍ୟେ ଲୋଭି ମୋ ମନ
ନିଶ୍ଚେ କହୁଛି ନୋହେ ମିଥ୍ୟା ବଚନ ଯେ ।"

କବି ଏଠାରେ ଯାହା ପ୍ରକାଶ କରିଅଛନ୍ତି ତାହା ତାଙ୍କର ଉକ୍ତି ଅନୁସାରେ ମିଥ୍ୟା ପ୍ରମାଣିତ ହେଉଅଛି । ଯେଉଁ କବି ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କର ଗୁଣରେ ଏପରି ମୁଗ୍ଧ ସେହି କବି ପୁଣି "ରଜନଙ୍କୁ ଛଳୋକ୍ତି" ଲେଖିଥିଲେ କିପରି ?

ସେହିଁ କବ ଲେଖିଛନ୍ତି ଯେ କବମାନେ "କାର୍ଯ୍ୟ ଲଭିବାକୁ" ସୁଭ କରନ୍ତୁ, ମାତ୍ର ତାଙ୍କର ବର୍ଣ୍ଣନାର ସେପରି ଉଦ୍ଦେଶ୍ୟ ନାହିଁ, ସେହି କବ ପୁଣି ଲେଖିଅଛନ୍ତି,

'ଏଣିକ ଏହି ଗୀତେ ବର୍ଣ୍ଣିବ ତାହା
ଆସିଅଛୁ ମୁଁ କରି ବଡ଼ ଉଚ୍ଛାହା ଯେ ।
ମନରେ କରିଅଛୁ ଯେତେ କାମନା
କେ ଦେଇ ପାରିବ ତା ପ୍ରଭୁଙ୍କ ବିନା ଯେ ।"

ଯେଉଁ ଯୁଗରେ କବ ଧନକୃଷ୍ଣ ତାଙ୍କର କାବ୍ୟ ରଚନାକରି ରାଜ ପ୍ରଶସ୍ତିଗାନ ପାଇଁ ରାଜାଙ୍କୁ ମନା କରିଥିଲେ, ସେହି ଯୁଗର କବ ବ୍ରଜନାଥ ରାଜପ୍ରଶସ୍ତିଗାନ କରିଅଛନ୍ତି । ଦାର୍ଢ୍ୟତାଭକ୍ତିରୁ ଧନକୃଷ୍ଣ ଦାସଙ୍କର ଏହି ବିଷୟ ଜଣାଯାଏ ।

ରାଜା—

"ମୋ ନାମ ଭଣିଲେ ଅବଶ୍ୟ । ଅନେକ ଦେବ ଗ୍ରାମଦେଶ ।
ମୋ ରାଜ୍ୟେ ଦେବ ଅଧିକାର । ଦେଖ ମୁଁ ଜଗତ ଈଶ୍ୱର ।
ନୋହିଲେ ମରିବୁ ଅବଶ୍ୟ । ଛାଡ଼ ତୋ ଜୀବନର ଆଶ ।"

କୃଷ୍ଣଦାସ—

"ତୁମ୍ଭଙ୍କୁ ନାହିଁ ମୋର ଡର । ମୋ ପ୍ରଭୁ ବଳେ ବଳୀୟାର ।
ଜଗତ ସୃଷ୍ଟି ଆନ ହେଲେ । ଗୀତ ମୁଁ ଆନକୁ ନ ବୋଲେ ।"

ଧନକୃଷ୍ଣ ଦାସଙ୍କର ଏହି ଆଦର୍ଶ ବାସ୍ତବକ କବର ଆଦର୍ଶ । ମାତ୍ର କବ ବ୍ରଜନାଥ ବଡ଼ଜେନାଙ୍କ ଲେଖନୀ ଏ ଆଦର୍ଶ ପ୍ରଚାର କରିବା ନିମିତ୍ତ ସମର୍ଥ ହୋଇ ପାରିନାହିଁ ! ତେଣୁ ଏଠାରେ ଆମର ଏତିକ ଜାଣିବାର କଥା ଯେ, କବ ନିଜର ଉଦ୍ଦେଶ୍ୟ

ସିଦ୍ଧିପାଇଁ ସମର ତରଙ୍ଗ କାବ୍ୟକୁ ବ୍ୟବହାର କରିଥିଲେ ଏବଂ ତାଙ୍କର ସେ ଉଦ୍ଦେଶ୍ୟ ମଧ୍ୟ ପୂରଣ ହୋଇଥିଲା ।

ଆଜ ଗୋଟିଏ କଥା ଏଠାରେ ଆଲୋଚନା କଲେ ପ୍ରସଙ୍ଗ ଦୃଷ୍ଟିରୁ ଅସମୀଚୀନ ହେବ ନାହିଁ । ଦାମୋଦର ପଟ୍ଟନାୟକଙ୍କ ସମ୍ପାଦିତ ସମର ତରଙ୍ଗର 'ନିବେଦନରେ' କୁହାଯାଇଅଛି ଯେ, ସମର ତରଙ୍ଗ ରଚନା ଶେଷକରି ବ୍ରଜନାଥ ବଡ଼ଜେନା ତାହାକୁ ନେଇ କଟକ ଯାଇ ଚମନାଗାଙ୍କୁ ପଢ଼ି ଶୁଣାଇଥିଲେ । ଚମନାଗା ସମର ତରଙ୍ଗର ଦ୍ୱିତୀୟ ଛାନ୍ଦର ଏକବିଂଶ ପଦର ପାଠ ଶୁଣି ରାଗିଯାଇ ସମର ତରଙ୍ଗକୁ ଫୋପାଡ଼ି ଦେଇଥିଲେ । ସେଥିରେ ଲେଖାଅଛି,

"ବାନ୍ଧ ସେ ପଞ୍ଚେ ପଣ୍ଡକା ବାନା,
ଯେତେ ନହାଇଲେ ଲଣ୍ଡକା ପିନା,
କପଡ଼ା ରଖି କ କରିବ ନା, ମୂଳ ନେମତ ଯେ ।"

ଏହା ଶୁଣି ଚମନାଗା ବିରକ୍ତ ହୋଇ କହିଲେ, "ଆମ୍ଭେ ଲଣ୍ଡକା ହେଲେ ବି ଆମ୍ଭ ହୁକୁମ ଲଣ୍ଡକା ?" ଏ କଥା ଢେଙ୍କାନାଳର ଲୋକମାନଙ୍କ ମୁଖରୁ ମଧ୍ୟ ଶୁଣାଯାଏ । ମାତ୍ର ଶ୍ରୀ ସୁଧାକର ପଟ୍ଟନାୟକଙ୍କ ଦ୍ୱାରା ସମ୍ପାଦିତ ସମର ତରଙ୍ଗର ମୁଖବନ୍ଧରେ ସମ୍ପାଦକ ଯୁକ୍ତି ପ୍ରଦର୍ଶନ ସହକାରେ ଏହାକୁ ଅସମ୍ଭବ ବୋଲି ପ୍ରକାଶ କରିଅଛନ୍ତି ।

ଚମନାଗାଙ୍କ ବିରୁଦ୍ଧରେ ଲେଖାଥିବା ଯୋଗୁଁ କବି ତାହାକୁ ନେଇ ଚମନାଗାଙ୍କ ଆଗରେ ପାଠ କରିବା କେବେହେଲେ ବୁଦ୍ଧିମାନର କାର୍ଯ୍ୟନୁହେଁ ବୋଲି ସମ୍ପାଦକ ମହାଶୟ ମନ୍ତବ୍ୟ ପ୍ରକାଶ କରି ବ୍ରଜନାଥ ବଡ଼ଜେନା ଏହା କରି ନ ଥିବେ ବୋଲି ଅନୁମାନ କରିଅଛନ୍ତି । ମାତ୍ର ବ୍ରଜନାଥ ବଡ଼ଜେନାଙ୍କର ସମର

ତରଙ୍ଗ ରଚନାର ଉଦ୍ଦେଶ୍ୟ ଜାଣିବା ପରେ ଏହା ଅସମ୍ଭବ ବୋଲି ମନେ ହୁଏ ନାହିଁ । କବି ସମର ତରଙ୍ଗ ରଚନା କରି ତାହାଦ୍ୱାରା କିଛି ଅର୍ଥ ଉପାର୍ଜନ କରିବାକୁ ଇଚ୍ଛା କରିଥିଲେ । ପୁଣି ଶିମନାଗାଙ୍କ ବିରୁଦ୍ଧରେ ସେ ଯାହା ଲେଖିଥିଲେ ତାହା ଢେଙ୍କାନାଳ ରାଜାଙ୍କ ସମ୍ମୁଖରେ ପ୍ରକାଶ କରିଥିଲେ । ଢେଙ୍କାନାଳ ରାଜା ଶିମନାଗାଙ୍କୁ ତିରସ୍କାର କରିବା ନିତାନ୍ତ ସ୍ୱାଭାବିକ । ମାତ୍ର ଢେଙ୍କାନାଳ ରାଜା ଯାହାକୁ ଲଡ଼କା ବୋଲି କହୁଥିଲେ ତାଙ୍କରି କଥା ଅନୁସାରେ ତ ପୁଣି ଗଡ଼ ଘୁଞ୍ଚ ଦୁଇବନ ପାଇଁ ବାହାରକୁ ଯାଇଥିଲେ । ଏପରି ଅବସ୍ଥାରେ, ଚିନ୍ତାକଲେ ଦେଖାଯିବ ଯେ, କବି ଶିମନାଗାଙ୍କୁ ବରଂ ଏହାଦ୍ୱାରା ଖୁସି କରିବାକୁ ଭାବିଥିଲେ । ମାତ୍ର ଫଳ ହେଲା ଓଲଟା । କବି ଶିମନାଗାଙ୍କଠାରୁ ପୁରସ୍କାର ପାଇବା ପରିବର୍ତ୍ତେ ପାଇଥିଲେ ତିରସ୍କାର । ତେଣୁ ଶ୍ରୀଯୁକ୍ତ ସୁଧାକର ପଟ୍ଟନାୟକଙ୍କର ଅନୁମାନରେ ହୁଏତ ଯାଥାର୍ଥ୍ୟ ନ ଥାଇପାରେ ।

କବି ସମର ତରଙ୍ଗକୁ ନେଇ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁର ହିନ୍ଦୋଳଗଡ଼ରେ ଥିବା ସମୟରେ ତାଙ୍କ ନିକଟରେ ଉପସ୍ଥାପିତ କଲେ । କବି ଏଠାରେ ନିଜର ନିବେଦନ ବର୍ଣ୍ଣନା କରିଅଛନ୍ତି ।

"ଏ ସମର ତରଙ୍ଗ ଗୀତ ପ୍ରସାଦେ
ସମ୍ପାଦ ହୋଇବି ମୁଁ ଅତି ପ୍ରମୋଦେ ଯେ ।
ହେ ମହାରାଜା ଦିବ୍ୟ ଚିତ୍ତରେ ହୋଇ
ମୋଠାରେ ଦୟାକର କାରତ ଇହୁ ଯେ ।
ବୁଲି ବୁଲି ବହୁତ ହେଲି ଥକିତ
ଅନୁସରଣେ ରହିବାକୁ ମୋ ଚିତ୍ତ ଯେ ।

ପୁରୁଷାନୁକ୍ରମକୁ ସଙ୍ଗାକ ହେବ
ସଂସାରେ ପ୍ରଭୁଙ୍କର ପଶ ରଚ୍ଛିବ ଯେ ।" (ସପ୍ତମ ଛାନ୍ଦ)

କବି ଏହି ନିବେଦନ କରିବା ଫଳରେ ରାଜାଙ୍କଠାରୁ ନୂଆଗାଆଁ ଗ୍ରାମ ପାଇଥିଲେ । କେବଳ ନୂଆଗାଆଁ ନୁହେଁ ସହିତ ପାଟବସ୍ତ୍ର ସହିତ ଦୁଇଶହ ଟଙ୍କା ମଧ୍ୟ କବିଙ୍କୁ ମିଳିଥିଲା । କବି ଏହିପରି ରାଜ ଅନୁଗ୍ରହ ଲାଭ କରିଥିଲେ ଏ ଅନୁଗ୍ରହ ସମର ତରଙ୍ଗର ଫଳ ।

## କବିଙ୍କର କବିତ୍ୱ ତଥା ପାଣ୍ଡିତ୍ୟ:—

ସମର ତରଙ୍ଗରେ କବି ନିଜର କବିତ୍ୱ ତଥା ପାଣ୍ଡିତ୍ୟର ପରିଚୟ ପ୍ରଦାନ କରିଅଛନ୍ତି । କବି ସମର ତରଙ୍ଗ, ଗୋପୀ ବିଳାପ, ଗୁଣ୍ଡିଚା ବିଜେ, ଚତୁର ବିନୋଦ, ଶ୍ୟାମ ରାସୋତ୍ସବ ଓ ଅମ୍ବିକା ବିଳାସ ରଚନା କରିଅଛନ୍ତି । କେଳି କଳାନିଧି, ଚଣ୍ଡିମାଳଶ୍ରୀ, ରାଜସଭା, ଛଳୋକ୍ତି ପ୍ରଭୃତି ତାଙ୍କର ଅନ୍ୟ କେତେକ ରଚନା ମଧ୍ୟ ଅଛି । କବି ଏହା ବ୍ୟତୀତ ଆହୁରି ଅନେକ ଛାନ୍ଦ ଓ ଚଉତିଶା ରଚନା କରିଥିବାର ଶୁଣାଯାଏ । କବି ସମର ତରଙ୍ଗର ସପ୍ତମ ଛାନ୍ଦରେ ଲେଖିଅଛନ୍ତି—

"ସଂସ୍କୃତ ପଦବୃତ୍ତ ଗୋଛନ୍ଦେ ବୋଲି
ନାନା ଭାଷାରେ ଗୀତ କବିତା କଲି ।
ବିବିଧ ଚଉପଦୀ ଚଉତିଶା ସିଁ
ବୋଲି ଛାନ୍ଦ ପ୍ରବନ୍ଧ ବୋଲନ୍ତି ମୂର୍ଦ୍ଧି ହେ ।
ସକାର ଛାନ୍ଦ ମାନ କୃତ ତୃର୍ତ୍ତିକ
କଥା ବର୍ଣ୍ଣନା ନାନାବିଧ କୌତୁକ ହେ ।
ତଗ ତମାଳ ଆଦି ଚ୍ଛଳକ ଗୀତ
ବ୍ରଜମୋହନ କେଳିଯୁକ୍ତ କବିତ୍ୱ ହେ ।"

କବି ସଂସ୍କୃତ, ଓଡ଼ିଆ ହିନ୍ଦୁସ୍ଥାନୀ ଭାଷାରେ କବିତା ରଚନା କରିବା କଥା ପ୍ରକାଶ କରିଅଛନ୍ତି । ଗୁଣ୍ଡିଚ୍ଛ ବିଜେ ଗ୍ରନ୍ଥରେ ତାଙ୍କର ଖୋରଠା ଭାଷାଜ୍ଞାନର ପରିଚୟ ମିଳେ । ଶ୍ୟାମ ରାସୋତ୍ସବ ଏକ ବୈଷ୍ଣବ ଧର୍ମ ତତ୍ତ୍ୱ ସମ୍ବଳିତ ଗ୍ରନ୍ଥ । ଏହି ଗ୍ରନ୍ଥଟି "ଶ" ନିୟମରେ ଲିଖିତ । ଗୋପୀବିଳାପରେ କବି ଶ୍ରୀକୃଷ୍ଣଙ୍କ ବିରହରେ ଗୋପୀ-ମାନଙ୍କର ବିଳାପ ବର୍ଣ୍ଣନା କରିଅଛନ୍ତି । ଚତୁର ବିନୋଦ ଏକ ଗଦ୍ୟଗ୍ରନ୍ଥ । ଏଥିରେ ବିଭିନ୍ନ ଗଳ୍ପ ସ୍ଥାନ ପାଇଅଛି ।

କବିଙ୍କର ବିଭିନ୍ନ ଭାଷାରେ ଦକ୍ଷତା ଥିବା ସୁବିଦିତ । ଏହାଛଡ଼ା କବି ଜଣେ ଉତ୍ତମ ଶ୍ରେଣୀର ଚିତ୍ରକର ଥିଲେ ବୋଲି ଜଣାଯାଏ । କବିଙ୍କର ଅଳଙ୍କାର ଶାସ୍ତ୍ରରେ ଉତ୍ତମ ପ୍ରବେଶ ଥିଲା । କବିଙ୍କର କବିତ୍ୱ କେବଳ ସମର ତରଙ୍ଗ କାହିଁକି, ତାଙ୍କର ଯେ କୌଣସି ଗ୍ରନ୍ଥରେ ପ୍ରକାଶ ପାଇଅଛି । କବିଙ୍କର ବର୍ଣ୍ଣନାରେ ଉପମା ପ୍ରୟୋଗ ସର୍ବାଦୌ ଲକ୍ଷଣୀୟ । ସମର ତରଙ୍ଗର ହିନ୍ଦୋଳନ ମହେନ୍ଦ୍ର ବାଦ୍ୟାଦୂତ, ସୈନ୍ୟମାନଙ୍କର ଅଭିଯାନ, ଯୁଦ୍ଧ ପ୍ରଭୃତି ବର୍ଣ୍ଣନାରେ ଯେପରି ଉପମା ଉପମେୟ ପ୍ରୟୋଗ କରିଅଛନ୍ତି ତାହା ତାଙ୍କର କବିତ୍ୱ ଶକ୍ତିର ଯଥାର୍ଥ ପରିଚୟ ପ୍ରଦାନ କରିଥାଏ । ସମର ତରଙ୍ଗରେ କବି ଯେଉଁ ବ୍ୟଙ୍ଗଚିତ୍ର ପ୍ରଦାନ କରିଅଛନ୍ତି ତାହା ମଧ୍ୟ ତାଙ୍କର କଳ୍ପନା ଶକ୍ତିର କମ୍ ପରିଚୟ ଦେଉନାହିଁ । ସମର ତରଙ୍ଗ କବିଙ୍କର ଏକ ସାର୍ଥକ ସୃଷ୍ଟି ।

ଓଡ଼ିଆ ସାହିତ୍ୟରେ ଏକ ନିର୍ଦ୍ଦିଷ୍ଟ ସମରକୁ କେନ୍ଦ୍ର କରି କାବ୍ୟ ରଚିତ ହେବା ଏହାହିଁ ପ୍ରଥମ । ଓଡ଼ିଆ ସାହିତ୍ୟରେ ସମର ଗୀତିକା ଭାବରେ ସମର ତରଙ୍ଗ ଏକ ଉଚ୍ଚ ଆସନର ଅଧିକାରୀ । ସମର ତରଙ୍ଗ ହିଁ ବାସ୍ତବରେ ବ୍ରଜନାଥ ବଡ଼ଜେନାଙ୍କର ପାଣ୍ଡିତ୍ୟ, କବିତ୍ୱ ଓ କଳ୍ପନା ଶକ୍ତିର ଯଥାର୍ଥ ପରିଚାୟକ ।

# ସମର ତରଙ୍ଗ

## ପ୍ରଥମ ଛାନ୍ଦ

(ରାଗ—ରସକୋଇଲ)

ଶ୍ରୀ ରାଧାବର ଚରଣକୁ ବନ୍ଦି
କହୁଛି ଯାହା ଶୁଣ ହେ ସୁମତି
ଦକ୍ଷିଣ ସିନ୍ଧୁ ତଟେ ନିତ୍ୟ ଧାମ
କ୍ଷେତ୍ରବର ପୁରୁଷୋତ୍ତମ ନାମ ସେ
ଯହିଁ ବିଜେ ଜଗନ୍ନାଥ ସେ
ବଳଭଦ୍ର ଭଦ୍ରା ସୁଦରଶନ ଏ
ଚତୁର ମୂରତି ବ୍ୟକତ ସେ । ୧ ।

---

କବି ପ୍ରଥମ ଛାନ୍ଦରେ ଢେଙ୍କାନାଳ ବିଷୟ ବର୍ଣ୍ଣନା କରିବା ପୂର୍ବରୁ ତାର ଅବସ୍ଥିତି ବିଷୟରେ ସୂଚନା ଦେବାକୁ ଯାଇ ଉତ୍କଳର ପ୍ରସିଦ୍ଧ ପୁରୁଷୋତ୍ତମ କ୍ଷେତ୍ର ବିଷୟ ବର୍ଣ୍ଣନା କରିଅଛନ୍ତି । ଅଷ୍ଟାଦଶ ଶତାବ୍ଦୀର କାବ୍ୟ ସାହିତ୍ୟର ପ୍ରସିଦ୍ଧି ଅନୁସାରେ କବି ଏଠାରେ "ଆଶୀ ନମସ୍କ୍ରିୟା" ସଂପାଦନ କରିଅଛନ୍ତି ।

୧ । ଶ୍ରୀ ରାଧାବର—ଶ୍ରୀ ରାଧାଙ୍କର ପତି, ଶ୍ରୀକୃଷ୍ଣ; କ୍ଷେତ୍ରବର—କ୍ଷେତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ; ବ୍ୟକତ—ପ୍ରକାଶିତ ।

ପତିତମାନଙ୍କୁ କରି ମୁକତି
ଉଦ୍ଧାନ୍ତି ପତିତପାବନ ନେତ
ପରମାନନ୍ଦ ସୁନ୍ଦର ସ୍ୱରୂପ
ଦରଶନେ ଦୂର କରନ୍ତି ତାପ ସେ
କୃପାସିନ୍ଧୁ ଦୀନବନ୍ଧୁ ଯେ
ନିଖିଳ ମାନସ କୁମୁଦ ଉଲ୍ଲାସ
କରିବାକୁ ପୂର୍ଣ୍ଣ ଇନ୍ଦୁ ଯେ । ୨ ।

ଏହି କ୍ଷେତ୍ରର ଉତ୍ତର ଦିଗରେ
ଢେଙ୍କାନାଳ ନାମେ ଅଛି ନଗରେ
ଧାତା କଲା ତା ଯତନେ ନିର୍ମାଣ
ରସା ରସିକମା ଶିର ଭୂଷଣ ସେ
କି କହିବି ତାର ଠେକ ଯେ
ସୁଖ ବିନା ଦୁଃଖ କି ରୂପେ ହୁଅଇ
ନଜାଣନ୍ତି ତହିଁ ଲୋକ ଯେ । ୩ ।

ସିଂହ ବିଦ୍ୟାଧର ବୀର ମଣ୍ଡନ
ଆଦ୍ୟରୁ ହେଲେ ସେ ରାଜ୍ୟ ରାଜନ
ତାଙ୍କଠାରୁ ପ୍ରତି ପୁରୁଷେ ରାଜା

---

୨ । ତାପ—ପାପ, କ୍ଲେଶ । ନିଖିଳ ମାନସ···ଇନ୍ଦୁ—ନିଖିଳ ବିଶ୍ୱଜନମାନଙ୍କର ମାନସ ଯଦି କୁମୁଦ ହୁଏ, ତାହାହେଲେ ତାହାକୁ ଉଲ୍ଲସିତ କରିବାରେ ଜଗନ୍ନାଥ ପୂର୍ଣ୍ଣଚନ୍ଦ୍ର ସଦୃଶ ।

୩ । ଧାତା—ବିଧାତା, ରସା···ଭୂଷଣ, ରସା ରୂପକ ରସିକା ନାରୀର ଶିରୋଭୂଷଣ; ଠେକ—ଗର୍ବ, ମହତ୍ତ୍ୱ ।

ଶୂର ପ୍ରତାପୀ ହାତା ମହାତେଜା ସେ
ବେଳକୁ ବେଳ ଅଧିକ ଯେ
ଖଣ୍ଡାବଳେ କେତେ ଖଣ୍ଡାଇତ ଙ୍କର
ଛଡ଼ାଇ ନେଲେ ମୂଲକ ଯେ । ୪ ।
ଏଥିଉଁ ନୃସିଂହ ଭ୍ରମରବର—
ରାଏ ପୁଣ ଯଶ କଲେ ଅପାର
ତାହାଙ୍କ ନନ୍ଦନ କୃଷ୍ଣଚନ୍ଦ୍ରଦାସ
ତାଙ୍କ ଗୁଣ ପୁଣ ବର୍ଣ୍ଣି ନପାରି ସେ
ଶୂର ସୁନ୍ଦର ରସିକ ଯେ
ହାତା ଗୁଣବନ୍ତ କନ୍ଧଧର୍ମରତ
ପ୍ରତାପବନ୍ତ ବିବେକ ଯେ । ୫ ।
ତାଙ୍କ ସିଂହ କୁଳ ଚନ୍ଦ୍ରମା ପ୍ରାଏ
ରାଜସିଂହ ଭ୍ରମରବର ରାଏ
ବ୍ରଜସୁନ୍ଦର କାମ ସମରୂପ
ଆଶ୍ରିତ ଲୋକର କଳ୍ପ ପାଦପ ସେ
ସକଳ ଗୁଣେ ନିପୁଣ ଯେ
ଏଥି ଉତ୍ତାରୁ ଯେ ନୃପ ହୋଇଛନ୍ତି
ତାଙ୍କ ଯଶଗୁଣ ଶୁଣ ହେ । ୬ ।

---

୪ । ସିଂହ ବିଦ୍ୟାଧର—ଢେଙ୍କାନାଳ ରାଜବଂଶର ଆଦ୍ୟ ପୁରୁଷ ।

୫ । ନୃସିଂହ ଭ୍ରମରବର—ଢେଙ୍କାନାଳ ରାଜବଂଶର ଜଣେ ଖ୍ୟାତନାମା ରାଜା; ବର୍ଣ୍ଣି ନପାରି—କୃଷ୍ଣଚନ୍ଦ୍ରଦାସଙ୍କର ଗୁଣ ବର୍ଣ୍ଣନା କରାଯାଇ ପାରିବ ନାହିଁ ।

୬ । କଳ୍ପ ପାଦପ—କଳ୍ପବୃକ୍ଷ, ସେ ଆଶ୍ରିତ ଲୋକ ପକ୍ଷରେ କଳ୍ପବୃକ୍ଷ ସମାନ ।

ସୋମବଂଶରେ ଯଥା ପରୀକ୍ଷିତ
ପାଣ୍ଡବେ ଯୁଧିଷ୍ଠିର ଯେଉଁ ମତ
ସିଂହ ବିଦ୍ୟାଧର କୁଳେ ତେମନ୍ତ
ଉଦୟେ ମହାପ୍ରତାପ ଶୂରବନ୍ତ ସେ
ତ୍ରିଲୋଚନ ନାମେ ଖ୍ୟାତ ଯେ
ରାଜା ମହେନ୍ଦ୍ର ବା— ହାଦୁର ଦେବ ଯା
ସଂସାର ମଧ୍ୟେ ବିଖ୍ୟାତ ଯେ । ୭ ।

ଢେଙ୍କାନାଳ ନଭେ ଗଗନ ଶଶୀ
ଲକ୍ଷଣବନ୍ତ ଦୁଃଖ-ତମ-ନାଶୀ
କଳାକର ତାର ଆନନ୍ଦ-କର
ସୁଖରେ ନିରତେ ଯାର ବିହାର ସେ
ଉଜ୍ଜ୍ୱଳ କଳା ପ୍ରକାଶେ ଯେ
ପଦ୍ମ୍ନୀ ମୁଦ୍ରିତ ହୋଏ ଯା ଲୋକନେ
ସୁରଗଣଙ୍କୁ ସେ ତୋଷେ ଯେ । ୮ ।

---

୭ । ସୋମ···ପରୀକ୍ଷିତ—ସୋମବଂଶରେ ପରୀକ୍ଷିତ ଯେପରି ପ୍ରସିଦ୍ଧ, ପାଣ୍ଡବେ···ଯେଉଁ ମତ—ପାଣ୍ଡବମାନଙ୍କ ମଧ୍ୟରେ ଯୁଧିଷ୍ଠିର ଯେପରି ପ୍ରଧାନ ।

୮ । ଢେଙ୍କାନାଳ···ଶଶୀ—ଢେଙ୍କାନାଳର ଆକାଶରେ ଚନ୍ଦ୍ର । ଲକ୍ଷଣବନ୍ତ—ସର୍ବ ଉତ୍ତମ ଲକ୍ଷଣରେ ପରିପୂର୍ଣ୍ଣ; ଦୁଃଖ-ତମ-ନାଶୀ—ଦୁଃଖ ରୂପକ ଅନ୍ଧକାରର ନାଶକାରୀ । କଳାକାର—ଚନ୍ଦ୍ର । ତାର ଆନନ୍ଦ-କର—ତାରମାନଙ୍କର ଆନନ୍ଦ ଦାୟୀ; ସୁରଗଣ—ଦେବତାଗଣ ।

ଯାହାର ଖ୍ୟାତି କାନ୍ତି ପ୍ରବଳେ
ପରିପୂର୍ଣ୍ଣ ହୋଇ ମହୀମଣ୍ଡଳେ
ସ୍ଥାନ ନପାଇ ବାହାରି ପଡ଼ିଲା
ଦଶ ଦିଗରେ ପୁଣି ପୂର୍ଣ୍ଣ ହେଲା ସେ
ତହିଁ ସ୍ଥାନ ହେଲା ନାହିଁ ଯେ
ତାରକୁଳ ଛଳେ ଠାବେ ଠାବେ ଏବେ
ଆକାଶେ ଘୋଟୁଛି ଯାଇଁ ଯେ । ୯ ।
ପ୍ରଚଣ୍ଡ ବୀର ପ୍ରତାପ ତପନ
ଶୁଖାଇଲା ଅରି ଆନନ୍ଦ ବନ
ନୃପତି ବଳ ଅନ୍ଧକାର ହରି
ତେବେ ସକଳ ଭୁବନରେ ପୂରି ସେ
ଦୁଷ୍ଟ କୁମୁଦ ନାଶିଲା ଯେ
ଅନୁଗତ ଲୋକ ସଜ୍ଜନ କମଳ
କୁଳଶୋଭା ବିକାଶିଲା ଯେ । ୧୦ ।
ସେ ପ୍ରତାପ ବର୍ଣ୍ଣି ହୋଇବ ନାହିଁ
ସହସ୍ରେ କବି ନ ପାରିବେ କହି
ସିନ୍ଧୁବାଲି କେ କରିବ ପ୍ରମାଣ
ଆକାଶ କଳନା ହୋଏ କି ପୁଣ ଯେ
ତଥାପି କହିବା କଳ୍ପୁ ଯେ
ଏ ନୃପସିଂହ ଚରିତ କହିବାକୁ
ଶରଧା ତ ବଳୁଅଛୁ ଯେ । ୧୧ ।

---

୯ । ପ୍ରବଳ—ପ୍ରବଳ ଭାବରେ, ଅଧିକ ମାତ୍ରାରେ ।
୧୦ । ଅରି—ଶତ୍ରୁ, ଆନନ୍ଦ ବନ—ଆନନ୍ଦ ରୂପକ ଜଳ ।
୧୧ । ପ୍ରମାଣ—ଗଣନା, କଳନା—ମାପ ।

ବରଗୀ ଓଡ଼ିଶା କଲେ ଅମଳ
ସରବର ଦେଉଥିଲେ ଭୂପାଳ
ବହ୍ନି ଯୋଗେ ହେଲ ଅନ-ବନଜ
ରାଜାରାମେ ଘୋଷା ବନ୍ଧିଲେ ତହୁଁ ସେ
ଫଉଜ କଷିଲେ କୋପେ ଯେ
ମଞ୍ଜୁ ଚଉଧୁରୀ          ସଙ୍ଗତେ ବସ୍ତୁର
ବାହାର ହୋଇଲେ ଆପେ ଯେ । ୧୨ ।
ମୋଟରି ନିକଟେ ପଡ଼ିଲେ ବଳ
ଉକିଲ ପେଷିଲେ ଅବମ ପାଳ
କାହିଁ ପାଇଁ ପୃଥ୍ୱୀ ନାଶିବ ମୋର
ପଇସା ନେଇ ଫେରଅ ଲସ୍କର ସେ
ନଦେଲ ତା ରଜାରାମେ ଯେ
ଦଗାଦେବା ମନେ          ଗୁପତେ ଅରଣ୍ୟେ
ବାହାଡ଼ିଲେ ଗଡ ତମେ ଯେ । ୧୩ ।

---

୧୨ । ସରବର—କର; ଅନବନଜ—ଅପଣ୍ଡ, ବିରୋଧ; ରଜାରାମ—କଟକରେ ଥିବା ତତ୍କାଳୀନ ମରହଟ୍ଟା ସୁବାଦାର; ଘୋଷା—କ୍ରୋଧ; ଫଉଜ କଷିଲେ—ସୈନ୍ୟସଜ୍ଜନା କଲେ, ମଞ୍ଜୁ ଚୌଧୁରୀ—କଟକରେ ଥିବା ତତ୍କାଳୀନ ଜଣେ ଧନୀବ୍ୟକ୍ତି, ସଙ୍ଗତେ ବସ୍ତୁର—ସମ୍ମତ ପରାମର୍ଶ କରି ।

୧୩ । ମୋଟରି—ଢେଙ୍କାନାଳ ଗଡ଼ର ଦଶମାଇଲ ଦକ୍ଷିଣ ପଶ୍ଚିମ ଦିଗରେ ଥିବା ଏକ ଗ୍ରାମ, ଏଠାରେ ସୈନ୍ୟଛାଉଣୀ ପକାଇବା ପାଇଁ ବିସ୍ତୀର୍ଣ୍ଣ ପ୍ରାନ୍ତର ଥିଲା; ଉକିଲ—ଦୂତ; ଲସ୍କର—ସୈନ୍ୟ; ତମେ—ତାମସିକ ମନୋବୃତ୍ତିରେ, କପଟରେ ।

ନୃପତ ଜାଣି ସେ କୂଟ ବଗ୍ଭର
ଆଜ୍ଞା ଦେଲେ ଦେଖି ଯାଅ ଆମ୍ଭର
ରାଜାଗମ ପଣ୍ଡିତଙ୍କୁ ବାଟରେ
ସଙ୍ଖୋଳି ଆସ ମର୍ଯ୍ୟାଦା ବେଶ୍ଭରେ ସେ
ହାକମ ଅଟନ୍ତି ସେହୁ ଯେ
ଖିର ଗୁଳ ଦେଇ ଭେଟିବ ତାହାଙ୍କୁ
ପାଶୋରବେ ନାହିଁ ଆଜ ଯେ । ୧୪ ।

ଆଜ୍ଞାପାଇ କଣ୍ଟୁ ଫଉଜ ଗଲେ
ରାଜାଗମଙ୍କୁ ଦରଶନ କଲେ
ଦଇବେ ସେଇ ପଣ୍ଡିତ ଗୋସାଇଁ
ବହୁତ ମନେ ସେବାକଲେ ଯାଇଁସେ
କୋଶେ ଅନୁସରି ଗଲେ ଯେ
କେତେ ଜମାଦାର ସେବାରେ ତାଙ୍କର
ଠାବେ ଠାବେ ବସା କଲେ ଯେ । ୧୫ ।

ଅତି ଦସ୍ତାକୁ ପଣ୍ଡିତ ସାହେବେ
ତଉଧୂସ୍ତ ବଡ଼ଲୋକ ଦଇବେ
ରାଜାଙ୍କ ଏ ଅନୁସରଣ ଯେତେ
ଅତି ପରସନ ହୋଇଲେ ବେନି ସେ

---

୧୪ । ସଙ୍ଖୋଳି ଆସ—କୁଶଳ ସମ୍ଭାଷଣ କରି ଆସ (ବ୍ୟଙ୍ଗୋକ୍ତି)। ଖିର ଗୁଳ···ଆଜ—ଖିର ଗୁଳଦେଇ ତାଙ୍କୁ ଏପରି ସମ୍ବର୍ଦ୍ଧନା ଜ୍ଞାପନ କରିବ ଯେ ତାହା ଯେପରି ସେ ଆଜି ଭୁଲି ପାରିବେ ନାହିଁ ।

ଇନାମ ଦେଲେ ବହୁତ ଯେ
ଗାଡ଼ି ଘୋଡ଼ା ଓଟ                ପାଲିଙ୍କି କନାଟ
ତମ୍ବୁଶାଲ ବନାଉଛ ଯେ । ୧୬ ।

ଖରଡ଼ ସତରଞ୍ଜି ଛୁଟ ଭୁଳ
ରେଜାଇ ଗାଲିସ୍ତ ଶେଯ ମୁରୁଳି
ଗଡ଼ୁଆ ଗଗରି ବାସନ ମାନ
କେତେ ପାଉଦେଲେ ହୋଇ ପ୍ରସନ୍ନ ସେ
ଗ୍ରାହକ ଅଟନ୍ତି ସେତ ଯେ
ଗୁଣ ଚିହ୍ନି ଅତି                ତରଳ ପାଇ ସେ
ବୋଇଲେ ନିଅ ସମସ୍ତ ମେ । ୧୭ ।

ମାତଙ୍ଗ ଘଣ୍ଟା ଟମକ ନିଶାଣ
ତାଲ ଚଉରୀଆସ କଟାରୀ ପୁଣ
ସବୁ ଦେଇଦେବେ ସନ୍ତୋଷ ହୋଇ
ଜୀବନ ପାଉଦେଲେ କେହି କେହି ସେ

---

୧୬ । ପଣ୍ଡିତ ସାହେବ—ରାଜାରାମ; ଚଉଧୁରୀ—ମଞ୍ଜୁ ଚୌଧୁରୀ; ପରସନ—ପ୍ରସନ୍ନ; ଇନାମ—ପୁରସ୍କାର କନାଟ—ତମ୍ବୁ ଘେରାଇବା କନା ।

୧୭ । ଖରଡ଼—ଆସନ; ଛୁଟଭୁଳ—ଛୁଟକନାରେ ତିଆରି ତୁଳାର ଗଦି; ମୁରୁଳି—ତକିଆ; ଗଡ଼ୁଆ—ଗୋଟ ଲୋଟା, ଗଡ଼ୁ; ଗଗରି—ଗରା ।

ଚନ୍ହିଁ କଉଁ କଉଁ ଜନ ଯେ
ଆନନ୍ଦେ ଦିଗମ୍ବର          ନବଣେ ଚଳିଲେ
ପିଣ୍ଢାବାସ କରି ଦାନ ଯେ । ୧୮ ।
ପଣ୍ଡିତ ସାହେବନ୍ହିଁ ସବୁଦେଇ
କହିଲେ ଅନୁରୂପ ହେଲା ନାହିଁ
ପ୍ରାଣନ୍ହିଁ ଦେଉଥିଲେ ପ୍ରୀତି ବଶେ
ରଜାଙ୍କ ଲୋକେ କହିଲେ ସନ୍ତୋଷ ହେ
ଏଥର ବିଜଏ କର ହେ
ଆଉ ଥରେ ଯେବେ          ଦଣ୍ଡମାଛ ହେବ
ଏହା ଘେନିବୁ ନିକର ହେ । ୧୯ ।
ଚଉଧୁରୀ ବାବା ସନ୍ତୋଷ ହୋଇ
ଏହି ରୂପରେ ସବୁଗଲେ ଦେଇ
ଯହିଁ ମୁଲକ ହୋଇଗଲେ ପାରି
ସଂସାର ଯାକରେ ପଡ଼ିଲା ହୁରି ସେ
ଢେଙ୍କାନାଳ ନଭ ପତି ଯେ
ଯାଉଁ ଯାଉଁ ବାଟେ          ଲୁଟିଲେ କପଟେ
କଟକ ସାରା ସମ୍ପତ୍ତି ଯେ । ୨୦ ।

---

୧୮ । ଧଣ୍ଡା—ପତକା; କମାଣ—ତୋପ; ନିଶାଣ—ବଡ଼ ନାଗରା; ଦିଗମ୍ବର—ଉଲଗ୍ନ ।

୧୯ । ଅନୁରୂପ—ଉପଯୁକ୍ତ; ବିଜଏ କର—ଯାତ୍ରା କର; ଦଣ୍ଡମାଛ ହେବ—ଶୁଭାଗମନ ହେବ, ଏହା ଘେନିବୁ—ପ୍ରାଣନେବୁ; ନିକର—ନିଶ୍ଚୟ ।

୨୦ । ଚଉଧୁରୀ ବାବା—ମଞ୍ଜୁ ଚୌଧୁରୀ; ମୁଲକ—ଢେଙ୍କାନାଳ ସୀମା,

ସହଜେତ ତାଙ୍କୁ ପଡ଼ିଲା ଦଣ୍ଡ
ଧାଙ୍ଗଆ ପିଠାରେ ନଚଳେ ଦାଣ୍ଡ
ଗୋଟିଏ ନାହାନ୍ତି ନବାଜ କାଣ୍ଡ
ହଜାର ହଜାର ହୋଇଲେ ଖଣ୍ଡ ସେ
ନେଇଜଟି ପଡ଼େ ସହର ଯେ
କାହା ସୁତ ବର ତୁଳ୍ଚ୍ଛା କାହାର
ମଲେ ଶ୍ୱଶୁର ଢଅର ଯେ । ୨୧ ।

ସଂସାରେ ଅକୀର୍ତ୍ତି ହେବାରୁ ଘୋର
ସବୁ ତଲସି ଦେଲେ ନରେଶ୍ୱର
ତଥାପି ତାଙ୍କ ମନ ଧୀର ନୋହେ
ଲୋକ ପେଶିଲେ ନାଗପୁର ଯାଏ ସେ
ଏମନ୍ତେ କଲେ ଅରଜ ଯେ
ଢେଙ୍କାନାଳ ରଜା ପ୍ରବଳେ ତମାମ
ଓଡ଼ିଶା ଯାଉଛି ଭଜ ଯେ । ୨୨ ।

ଯେଣୁ ଚୁଗୁଲି ନାନାମତେ କଲେ
ଆପେ ଚେମଣାବାବୁ ବାହାରିଲେ
କାଟକୁ ଗଜାରାମ ମଞ୍ଜୁ ଯାଇ
ବୋଇଲେ ବଙ୍ଗଳା ଯାଅ କପାଇଁ ସେ
କଲକତା ଢେଙ୍କାନାଳ ଯେ

---

୨୧ । ଧାଙ୍ଗଆ—କ୍ଷତ ବିକ୍ଷତ ସୈନିକ ।

୨୨ । ତଲସି—ଖୋଜ ଖୋଜ; ନରେଶ୍ୱର—କଟକରେ ଥିବା ନାଗପୁର ଭୋଁସଲଙ୍କର ପ୍ରତିନିଧି ।

ଏହା ସାଙ୍ଗ କରି                 ନଗଲେ କଟକ
ଗୁଣ୍ଡୁ ଯାଉଛନ୍ତି ସମ୍ଭାଳ ଯେ । ୨୩ ।
ଯାଗ ଫଉଜ ପକାଇଲେ ଆଣି
ମହା ଭୟରେ କମ୍ପିଲା ଧରଣୀ
ପବନ ନଚଳ ହୋଇଲା ସ୍ଥିର
ଶୁଖିଲା ସରିତ ପିଅନ୍ତେ ନୀର ସେ
ଅବାଟ ହୋଇଲା ବାଟ ଯେ
ଦଶଦ୍ୱାରେ ଧ୍ୱନି                 ପୂରିଲା ବାଜନ୍ତେ
ବାଜା କରି ଘଣ୍ଟି ଘଣ୍ଟ ଯେ । ୨୪ ।
ବାରହନ ତାଙ୍କ ପଡ଼ିବା ଯେଣି ।
ଚଳକୁ ଲଶିଗଲାକ ମେଦନୀ
ଅଟଇ ସେ ଅତି ନିଦାଘ କାଳ
ଜଳ ନପାଇ ହୋଇଲେ ଆକୁଳ ସେ
ବାଗା ନପାଇଲେ ଚଗ ଯେ
ବାଡ଼ରେ ଅନେକ                 ମରିଗଲେ ଲୋକ
ସନ୍ଧି ନପାରିଲେ ଖଗ ଯେ । ୨୫ ।
ଉପର ମନେ ବନ୍ଦୋବସ୍ତ କରି
ଫଉଜ କଟକ ଗଲେ ବାହାରି
ପଇସାର ସବୁ ମିଳିଲା ନାହିଁ

---

୨୩ । ଚେମଣାବାବୁ—ନାଗପୁର ଭୋଁସଲାଙ୍କ ପୁଅ ।
୨୪ । ବାଜାକସ୍ତ ଘଣ୍ଟି ଘଣ୍ଟ—ଘୋଡ଼ା ବେକରେ ଘଣ୍ଟି ଓ ହାତୀ ବେକରେ ଘଣ୍ଟା ବନ୍ଧା ଯାଇଥାଏ ।
୨୫ । ଲସିଗଲା – ଦବିଗଲା; ବାଡ଼—ବସୂତକା ।

ଏଣୁ ଚେମଣାବାବୁ ଗ୍ରେଷ ବନ୍ଧ ସେ
ଜଳଲେ ଅଗ୍ନି ଫଗ୍ୱଏ ସେ
ମନ୍ତ୍ରୀ ଗ୍ରଜାଗ୍ରମ- ଙ୍କର କ୍ରୋଧବାଣୀ
ଘୂଚ ଚକ୍ଷୀଁ ପଡ଼ୁଥାଏ ସେ । ୨୭ ।

ଏମେ ଶେଷହେଲ ବରଷା କାଳ
ଫଥକ୍ଷ୍ଟି ଚଳନ୍ତି ଶୁଖନ୍ତେ ଜଳ
ଡେଙ୍କାନାଳକୁ ଧଣ୍ଡା ହେଲ ପାର
ଫଜିଜ ଆସିବେ ପଡ଼ିଲ ହୁର
ସାଜାଇଲ ସବ ସମ୍ଭାର ସେ
ଜୀନ ଜନ୍ମିଷ ଲାଲ ମେଖ ଦଉଡ଼ି
ଗ୍ରୂଶଦାମା କଳଆଇ ସେ । ୨୭ ।

ହାଉଦା ଅମାଗ୍ରି ଆନ୍ଧ୍ର ଶିକୁଳ
ଚୋପର ପଲିଙ୍କଆ ଘଣ୍ଟମାଳୀ
ଗଡ଼ ଶଗଡ଼ ଶଗଡ଼ ପଲ୍ଲଣ
ଭାର ସମ୍ଭାର ସିନ୍ଧୁ କର୍ତ୍ତୀ ପୁଣ ସେ

---

୨୬ । ଜପରେ ମନେ ବନ୍ଦୋବସ୍ତ କରି—ଖର ଦିନର ଅସୁବିଧା ଯୋଗୁଁ ସୈନ୍ୟମାନଙ୍କୁ ଫେରାଇ ଦିଆଗଲ, ମାତ୍ର ଲୋକ ଦେଖାଣିଆ ଭାବରେ ପୂର୍ବସର୍ତ୍ତ ଅନୁଯାୟୀ ଫେରାଇ ଦିଆଯିବାର ପ୍ରକାଶ କରାଗଲ ।

୨୭ । ଧଣ୍ଡା—ଧ୍ୱଜା; ଲାଲମେଖ—ଘୋଡ଼ା ନାଲରେ ମାରିବାର କଣ୍ଟା; ଗୁରଦାମୀ—ଘୋଡ଼ା ଉପରେ ପକାଇବା ଚାଦର; କଳଆର—ଘୋଡ଼ାର ଲଗାମ ।

ଖଟ ଚଉକ ପାଲଙ୍କି ଯେ
ଚମ୍ବୁ କନାଟ ନାନାଜାତ ବର୍ଣ୍ଣ
ସମିଅନା ନୋହେ ଲେଖି ଯେ । ୧୮ ।

ତୋପ କମାଣ ଡିଶକଟ ଗୁଣ୍ଡ
ଜଜାଲ ଜମ୍ବୁର ନଳୀ ପ୍ରଚଣ୍ଡ
ଯେତେକଟା ସାତହାଥ ବନ୍ଧୁକ
ଗରନାଳ ବାଣ ସବୁହୁଁ ଟେକ ଯେ
ଚକମକ ନଗା ନଳୀ ଯେ
ଗାରଦୀଧର ବାହାରଲେ ଯହୁଁ ସେ
ବ୍ରହ୍ମାଣ୍ଡ ଦଅନ୍ତ ଜାଳ ଯେ । ୧୯ ।

---

୧୮ । ହାଉଦା—ହାତୀ ଉପରର ଆସନ; ଅମାରୀ—ହାତୀ ଉପରେ ରଖାଯାଇଥିବା ରଜାଙ୍କ ବସିବାଲାଗି ମୂଲ୍ୟବାନ ଆସନ; ଆନ୍ଦୁ—ହାଉଦା ତଳେ ପକାଯିବା ଗଦି; ଶିକୁଳି—ଲୁହାର ଜଞ୍ଜିର; ଟେ ପର—ହାତୀ ମୁଣ୍ଡ ଉପରେ ପଡ଼ିଥିବା ରଙ୍ଗିନ ଚାଦର; ମଳଞ୍ଚିଆ—ହାଉଦା ଉପରେ ପଡ଼ିଥିବା ଚାଦର; ଘଣ୍ଟମାଳୀ—ଘଣ୍ଟର ମାଳ; ଗଡ଼—ଦୁଇଚକିଆ ଶ୍ରେଷ୍ଠ ଗାଡ଼ି; ଶଗଡ଼—ଶ୍ରେଷ୍ଠ ଶଗଡ଼; ପଲଣ—ଘୋଡ଼ା ବଳଦ ଉପରେ ପକାଯିବା ଅଖା; କନାଟ—ଚମ୍ବୁର କନାବାଡ଼; ସମିଆନା—ଚାନ୍ଦୁଆ ।

୧୯ । ଡିଶକଟ ଗୁଣ୍ଡ—ଲମ୍ବାତୋପ; ଜଜାଲ—ଶ୍ରେଷ୍ଠ ତୋପ, ଜମ୍ବୁର—ବଡ଼ ବନ୍ଧୁକ; ଗରନାଳ ବାଣ—ଶ୍ରେଷ୍ଠ ତୋପ; ଚକମକ ନଗା ନଳୀ—ପଥର ବସା ବନ୍ଧୁକ, ଗାରଦୀ—ପଦାତିକ ସୈନ୍ୟ ।

ତେଲେଙ୍ଗା ବାହାର ଧରି ତଙ୍କୁଣ
ପନ୍ଥି ନ ଦଶିଲ ସୂର୍ଯ୍ୟ କରଣ
ବାରଦ ଗୁଳା ଗୁଳି ଘର ଘର
ରଞ୍ଜକ ଜାମୁକା ନିଆଁ ପଥର ସେ
ବେଲଦାମ ନାନା ସଜ ଯେ
ଡାଲ ଝଣ୍ଡା ଛୁରି                ଜେ ବାଙ୍କୁ କଟାରି
ଜା ହାଥେ ସାବେଳୀ ସାଞ୍ଜି ଯେ । ୩୦ ।

ଧଅଁସା ନାଗରା ନୌବତ ଝାଡ଼
ତେଲେଙ୍ଗୀ ବାଜା ଦୃଙ୍ଗୁ ଗୁଡ଼ୁଗୁଡ଼ି
ବିବିଧ ବନ୍ଧରେ ଗାରଦି ବାଦ୍ୟ
ନା-ମରଦ ଶୁଣି ହୋଏ ମରଦ ସେ
ଭେରି ରଣ ଶିଙ୍ଗା ତୂରି ଯେ
କେନ୍ତି ମୁହଚଙ୍ଗ                ରଙ୍ଗେ ବାଜନ୍ତି
କେହୁ କରତାଳ ଧରି ଯେ । ୩୧ ।

---

୩୦ । ତଙ୍କୁଣ—ଏକମୁନା, ରଞ୍ଜକ—ବାରୁଦ, ଜାମ୍ବୁକା—ନିଆଁ ଝରଇବା ଦଜାଡ଼; ବେଲଦାମ—ବାରୁଦଦାମ, ବାଙ୍କୁକଟାରି—ବଙ୍କାଛୁରି; ସାବେଳୀ—ସାବଳ ପରି ଅସ୍ତ୍ର; ସାଞ୍ଜି—ଅସ୍ତ୍ର ବିଶେଷ ।

୩୧ । ଧଅଁସା—ନାଗରା; ନୌବତ—ବହୁ ପ୍ରକାର ମିଳିତବାଦ୍ୟ, ଝାଡ଼—ବାଦ୍ୟ ବିଶେଷ, ଦୃଙ୍ଗୁ ଗୁଡୁ ଗୁଡ଼ି—ବାଦ୍ୟ ବିଶେଷ; ବନ୍ଧ—ବଜାଇବା ରୀତି; ଗାରଦି ବାଦ୍ୟ—ପଦାତିକ ସୈନ୍ୟମାନେ ଯୁଦ୍ଧଯାତ୍ରା କରିବା ସମୟରେ ବଜାଉଥିବା ବାଦ୍ୟ; ନାମରଦ—ପୁରୁଷତ୍ୱହୀନ ବ୍ୟକ୍ତି, ମୁହଚଙ୍ଗ—ମହୁରି ।

ମୁଦ ଦୋକାନ ଅଛାଶ ବଜାଶ
ବଣିଆ ଗଣ୍ଡା ଉଆକାଉ ବାଶ
ପାନଗ୍ର ପନ୍ନଅଗ୍ର କେତେ ମାଳୀ
ଲକ୍ଷ ଲକ୍ଷ ଲଦା ବଳଦ ଚଳନ୍ତେ
ମୋଚ ଚମାର କମାର ଯେ
କୋଟି କୋଟି ହୋଇ ଲୁଟି ପାଇଁ ପକ୍ସି
ଲୋଗ୍ଭ ଲୁଙ୍ଗୁଡ଼ା ବାହାର ଯେ । ୩୨ ।

ଅଗାଡ଼ ଲସକର ଚଳିଗଲେ
ମହ୍ଟିଲୋକେ ସାଙ୍ଗେ ଧଣ୍ଡା ଗାଡ଼ିଲେ
ରାଜା କ୍ଷିଁ ବାହାର ପଛେ ହୋଇଲେ
ଆଉ ରୁହେ ଏହା ବର୍ଣ୍ଣିବ ଉଚ୍ଛଲେ
ନୀଳାଚଳ ଚନ୍ଦ୍ର ଶଶି ଯେ
କବି ବ୍ରଜନାଥ ବଡ଼ଜେନା ରସେ
ଏ ଚରିତ ରଚଯ୍ନ୍ତ ଯେ । ୩୩ ।

—o—

---

୩୨ । ମୁଦ—ଖୁଚୁରା ବେପାରୀ; ଗଣ୍ଡା ଉଆକାଉବାଶ—ବାଣିଜ୍ୟ ଶ୍ରେଣୀର ଧେଣ୍ଡୁରା ବଜାଳ; ପାନଗ୍ର—ପାନବାଲା, ପନ୍ନଅଗ୍ର—ପତ୍ରବାବାଲା; ଲଦାବଳଦ—ଥୋରଆ ବଳଦ, ଲୋଗ୍ଭ-ଲୁଙ୍ଗୁଡ଼ା—ନୀଚ ଶ୍ରେଣୀର ଲୋକେ ।

୩୩ । ଅଗାଡ଼—ଆଗରେ; ଲସକର—ସେନା; ଧଣ୍ଡା—ପତାକା; ଗାଡ଼ିଲେ—ପୋତିଲେ ।

# ଦ୍ୱିତୀୟ ଛାନ୍ଦ

## ରାଗ—ପାହାଡ଼ିଆ କେଦାର

ସାରା ଫଉଜ ହେଲେ ତଆର          ମୁସଦ୍ଦମୁଷା ହେଲେ ବାହାର
ପାଗାସୁଆର କ ସରଦାର କ ଜମାଦାର ଯେ
ଯେ ଯାହା ମୁରତବ ସମ୍ଭାର          ଦୌଲତ ସେନା ହେଲେ ହାଜର
ମଞ୍ଜୁର କରି ହୁକୁମ ପାଇଯାନ୍ତି ସଭିର ଯେ
କେହୁ ଚଢ଼ିଛି ତାଜ ବାଜୀ ଉପର ଯେ
ରଙ୍ଗ ଅଙ୍ଗା ଅଙ୍ଗକୁ ଦିଶେ ସୁନ୍ଦର ଯେ
ଢାଲକ ପୂର ବାମ ହାଥରେ          ଭାଲ କଷିଛି ଦକ୍ଷିଣ କରେ
ଲାଲ ପଗଡ଼ ଭଲ ମାନିଛି ଶିରକୁ ତାର ଯେ । ୧ ।

କେ ଅଛି ଚଛି ବାଜୀକ ଚଢ଼ି          ଧରି ନେଉଛି ଯୋଡ଼କ ଯୋଡ଼
ଇଶାରା କଲେ ମହାକ ଘୁଡ଼ି ଯିବ ସେ ଉଡ଼ି ଯେ
କେହୁ ତୁରୁକ ପିଠିରେ ବସି          ଢାଲ ବରଛି ଧରିଛି କଷି
କର୍ଣ୍ଣରେ ନାଶ ଦେଇଛି ଖୋଷି ଲମ୍ବିଛି ଦାଢ଼ି ଯେ
କେହି ସୁଆର ହୋଇ ଇରାକି ପର ଯେ
ଯେତେ ସମ୍ଭାଳ ନେଲେ ନୋହେ ସେ ସ୍ଥିର ଯେ

---

୧ । ମୁସଦ୍ଦ—ହିସାବ ରକ୍ଷକ; ପାଗାସୁଆର—ଘୋଡ଼ସବାର; ମୁରତବ—ମର୍ଯ୍ୟାଦା ସମ୍ପନ୍ନ; ତାଜବାଜୀ—ଆରବ ଜାତୀୟ ଘୋଡ଼ା; ରଙ୍ଗ ଅଙ୍ଗା—ରଙ୍ଗୀନ ଜାମା; ଭାଲ—ବର୍ଚ୍ଛାଭଳି ଅସ୍ତ୍ର ।

ଫୁ ଫୁ ଶବଦ ମୁଖୁଁ ବାହାର      ଝଳୁଳି ପରି ଚରଣ ତାର
ହୁଅନ୍ତେ ଚୁ ଚୁକାର ପିଠିରେ ଠୁକୁଛି କର ଯେ । ୨ ।

ଘୁଳି ଚଳାଇ ଚଳୁଛି କେହୁ      କାହା ଟାଙ୍ଗଣ ଯାଉଛି ବହି
କେ ଘୋଡ଼ୀ ଅଡ଼ ରହନ୍ତେ ଲେଡ଼ ଯୋଡ଼ ଲଗାଇ ଯେ
କେଉଁଠି ଘୁଲେ ଦୁଇ ଗୋଡ଼ରେ      ସୁଆର ଖସି ପଡ଼ବା ଡରେ
କଣ୍ଠକୁ ଭଡ଼ଧରି ଦୃଢ଼ରେ ସମ୍ଭାଳି ରହି ଯେ
କାହା ଘୋଡ଼ା ଘୋଡ଼ୀକି ଦେଖି ଆଗରେ ଯେ
ମତ୍ତେ ମିଶି ଆସନ୍ତେ ଅତି ବେଗରେ ଯେ
ବାଗ ହାଥକୁ ଅଳପ ମୋଡ଼ି      ଆଡ଼େ ସଳଖି ଲଗାନ୍ତେ ଲେଡ଼
ପବନ ପରି ଗଲ ସେ ଉଡ଼ି ସେହି ଲଗରେ ଯେ । ୩ ।

କାହା ହିଂସାର ସ୍ୱନେ ଫସାର      କର୍ଣ୍ଣ ଉଠୁଛି କେହୁ ବସାର
ପରି ଛଟକେ କେ ବାଜୀଶାର ପବ ଗତିରେ ଯେ
ଜଳଭଉଁରି ପରି କେ ଫେରି      କେ ଘୋଡ଼ ଅତି ପ୍ରଖରେ ଉଡ଼ି
ଯାଇ ଆସୁଛି ବାମ ଦକ୍ଷିଣ ଦୁଇ କକ୍ଷରେ ଯେ
କେହୁ ନାଟୁଆ ପରି ଢଣେ ଗତିରେ ଯେ
କାହା ଚରଣ ଥପୁ ନୋହେ କ୍ଷିତିରେ ଯେ
କେ ବଙ୍କ ଆସେ ଗ୍ରୀବାକୁ ମୋଡ଼ି      ଡେଇଁ ଯାଉଛି ଯୋଡ଼କ ଯୋଡ଼ି
କେ ସ୍ରୋତ ନଈ ନାବ ପରାଇ ଘୂଲେ ଗତିରେ ଯେ । ୪ ।

---

୨ । କଚ୍ଛିବାଜୀ—କଚ୍ଛି ଘୋଡ଼ା; ତୁରକ—ତୁର୍କୀ ଜାତୀୟ ଘୋଡ଼ା; ବରଛି—ବର୍ଛୀ; ଇରାକି—ଇରାନଜାତୀୟ ଘୋଡ଼ା ।

୩ । ଟାଙ୍ଗଣ—ଟଟ୍ଟୁ ଘୋଡ଼ା; ଲେଡ଼ ଯୋଡ଼—ଦୁଇଗୋଇଠି ।

୪ । ହିଂସାର—ଘୋଡ଼ାର ହିଁ ହିଁ ଶବ୍ଦ; ବସାର—ଦନ୍ତିକର ମାଛ; ବଙ୍କ ଆସେ—ବଙ୍କେଇ କରି ।

ଅତ୍ୟନ୍ତ ମତ୍ତ ମାତଙ୍ଗ କୁଳ          ଚଳନ୍ତି ଧୀରେ ହୋଇ ପ୍ରବଳ
କି ସେ ପ୍ରବଳ ପର୍ବତମାଳ ମାନ ସଙ୍କୁଳ ଯେ
କିବା ଧରଣୀ ତରୁଣୀ ମାଳ          ଦୁକୂଳ ପିନ୍ଧି ହସେ ମଞ୍ଜୁଳ
କି ସେ ଆକାଶୁଁ ଛୁଟି ପଡ଼ୁଛି ଜଳଦ ଜାଳ ଯେ
ଏତେ ବେଳରେ ମଦଜଳ ବରଷେ ଯେ
ଏହି ରୂପେ ଆସୁଅଛି ମାନସେ ଯେ
ପୁଣି କି ସିନ୍ଧୁ ମନ୍ଥିଲେ ଦେବେ          ସିନ୍ଧୁର କୁଳ ଜନମି ଏବେ
ଅସଂଖ୍ୟ ହୋଇ ଆସୁ ଅଛନ୍ତି ଅତି ହରଷେ ଯେ । ୫ ।

କର୍ଣ୍ଣ ହସ୍ତୀକ ମୋତି ଝାଲର          ମାନୁଛି କାହା କର୍ଣ୍ଣେ ସୁନ୍ଦର
ଘଣ୍ଟି ଘାଗୁଡ଼ି କାହାର ଥୋଇ ହସ୍ତ ବଟଇ ଯେ
ପ୍ରବଳ ଭୃଙ୍ଗ ବେଢ଼ି ମାତଙ୍ଗ          ରଙ୍ଗ ସଜରେ ସାଜିଛି ଅଙ୍ଗ
ଘୁଳକ ତାର ଗଙ୍ଗା ତରଙ୍ଗ ଯୋଖିବା ମାଇ ଯେ
କହିଁ ଗଜରାଜର ବସନ୍ତ ସଜ ଯେ
ପଶୁ ଭୂଷଣେ ଅତି ଶୋଭା କା ତେଜ ଯେ
ତାହାଙ୍କ ମତ୍ତ ମତିରୁଁ କରି          ବସ୍ତୁର ହୋଏ ନିଶ୍ଚେ ବଇରି
କୂଳ କମଳ ବନକୁ ଦଳି ଦେବେ ଏ ଆଜ ଯେ । ୬ ।

ଏହି ସମୟେ ଗଣକ ପାଇଁ          ସ୍ଥାଏତ ଧରି କହିଲ ଏହି-
କ୍ଷଣି ପ୍ରସ୍ଥାଣ କରିବା ବୀରବର କେଶରୀ ଯେ
ନେପାଳ ଦେଶ ଜାତ ସିନ୍ଧୁର          ଅମାସ୍ତି କଷି କଳି ହାକର
ତହିଁ ଆରୋହି ରଜା ତେମଣାବାବୁ ବାହାରି ଯେ

---

୫ । ହୋଇ ପ୍ରବଳ—ବଳଶାଳୀ ହୋଇ; ମାନସଙ୍କୁଳ—ଆତ୍ମ-
ସମ୍ମାନଜ୍ଞାନ ସମ୍ପନ୍ନ ।
୬ । ବସନ୍ତ—ହଳଦିଆ; ପଶୁ—ଖଇରିଆ ।

ଗୃହପାଶରେ ଘାଗା ସୁଆଟର ଘେର ଯେ
ନାମଖ୍ୟାତ ସିଂହାଗ୍ନୀମାନେ ବାହାର ଯେ
ନକବ ଶ୍ୱେତପଦାରେ ଡାକନ୍ତ       କନ୍ଧ ନୋହେ ସେ ପଞ୍ଚି ସମ୍ପତ୍ତି
କି ଅବା ଛୁଞ୍ଚ ପଡ଼ିଲା ସୁରନଗର ଶିଶୁ ଯେ । ୭ ।

ବରଷାକାଳ ନଦୀ ପରାଭ       ବାଟେ ଅବାଟେ ଗଲେ ସେ ବହି
ଦଶକୋଶରେ ରହିଲା ନାହିଁ ଚଳୁ ତୃଣହିଁ ଯେ
ଚଳନ୍ତେ ତାଙ୍କ ଚରଣ ଘାତେ       ମହୀଧମାନ ହେଲେ ପଦଂତେ
ପିଇ ପିବାରେ ଶୁଖିଲେ କେତେ ପୋଖରୀ ନଈ ଯେ
ପଥର ହିଁ ରହିଲା ନାହିଁ ପଥରେ ଯେ
କାହା ଧୃତି ରହିବ ଅବା ଏଥିରେ ଯେ
ଧୂମାନ୍ତ କରି ମୂଲକଯାକ       ଧନ କାଞ୍ଚନ ଲୁଟି ଅନେକ
ପଡ଼ିଲେ ଯାଇଁ ଷାଠିଏ ବାଟି ବଲ ଭିତରେ ଯେ । ୮ ।

ରଜନ ମଣି ପୂର୍ବରୁ ଜାଣି       ଅଗାଧ ପାଣି ଜଳୀ ନିର୍ମାଣି
ପାଷାଣ କାଟି ସଜାଡ଼ିପୁଣି ମୁରୁଗ କରିଯେ
ଭଣ୍ଡି ବାକବା ଥାନକୁ ହେଳ       ଭଣ୍ଡି କାଙ୍ଗୋଲି ଅଛନ୍ତି ସାଜ
ଚଣ୍ଡି ପ୍ରସାଦ ଗୁଣ୍ଡିକୁ ଖଞ୍ଜି ଛନ୍ତି ଧନୁର ଯେ
କାହ୍ନିଁ ମୂଲକ ସଏଦାନ ତୋପକୁ ଯେ
ରୂପି ରଖିଅଛନ୍ତି କୋଣେ ଧାପକୁ ଯେ

---

୭ । ଯାଏତ — ମୁହୂର୍ତ୍ତ; ନକବ — ଘୋଷଣାକାରୀ; ଶ୍ୱେତପଦାର — ରଜଦଣ୍ଡ ବହନକାରୀ ଭୃତ୍ୟ ।

୮ । ଷାଠିଏ ବାଟି ବଲ — ଢେଙ୍କାନାଳଗଡ଼ର ପଶ୍ଚିମ ପାର୍ଶ୍ୱସ୍ଥ ବୃଷ ବଲ ।

ଅଳପଟର କଉଁ ଗୁଣ୍ଡକୁ          ରୂପି ଅଜନ୍ତ ଖାଲ ମୁଣ୍ଡକୁ
    ମଜଡ଼ା ଟେକଛନ୍ତି କାହାର ଉଚ ମାପକୁ ଯେ । ୯ ।

କଉଁ ମୁରୁଜ ଭିତରେ ଘଡ଼          ସଜାଡ଼ ନଳୀ ଧାଡ଼କ ଧାଡ଼
    ରୂପି ଅଜନ୍ତ ଲାଗୁଲେ ଉଡ଼ିଯିବ କଜାଡ଼ ଯେ
କାନ୍ଥିରେ ସିପା ଲଗାଇ ଭିଡ଼          ଛନ୍ତି ଜଲାଲ ଯୋଡ଼କ ଯୋଡ଼
    ଅଧ କୋଶରେ ବାଜଲେ ଝଡ଼ ପଡ଼ବ ଘୋଡ଼ ଯେ
    ରୂପା କାନ୍ଥିରେ ପେଟକଟା କମାଣ ଯେ
    ଛାର ଫିଟିଲେ ଅଛୁ ଏହୁ ପ୍ରମାଣ ଯେ
କୋଟଶ ସରିକ କ ତରୁ ଦାରୁ          କବା ପଥର କ ଅବା ମେରୁ
    କ କଷ ନର ବାଣାନକର ପ୍ରବଏ ମାଣ ଯେ । ୧୦ ।

କାନ୍ଥିରେ ଧାଉଁରଥା ପଦଣ୍ଡ          ଜଳାଭିତରେ ଗଳାଇ କାଣ୍ଡ
    ବନ୍ଧିବାପାଇଁ ହୋଇଛି ମୁଣ୍ଡ-ଲୁଆଣ ଉଣ୍ଡି ଯେ
କାନ୍ଥି ଡକୁଣ ମାପକୁ ଆସି          କେତେବେଳରେ ଯିବେ କା ପଶି
    ବୋଲି ଡକୁଣ ଅଜନ୍ତ କଷି ଗୁଣ୍ଡିବେ ଗଣ୍ଡି ଯେ
    ଆଣ୍ଠୁ କଣ୍ଠାରେ ମାଟି ବଜଳ ପଟା ଯେ
    ଢଗବାରଣ ଘଡ଼ ଗୋଠାକୁ ଗୋଠା ଯେ

---

୯ । ମୁରୁଜ — ଗଡ଼କାନ୍ଥିକୁ ଲଗି ଯୁଦ୍ଧସାମଗ୍ରୀ ରଖିବା ଘଡ଼, ଉଣ୍ଡି — କାନ୍ଥର ରନ୍ଧ୍ର, କାଙ୍ଗୁରା — କାନ୍ଥର ବଡ଼ରନ୍ଧ୍ର; ଚଣ୍ଡିପ୍ରସାଦ ଓ ମୁଲକ ସଏଦାନ — ଢେଙ୍କାନାଳର ଦୁଇଗୋଟି ବଡ଼ ତୋପର ନାମ । ରୂପି ଅଜନ୍ତ — ଖଞ୍ଜି ଅଜନ୍ତ; ଗୁଣ୍ଡ — ତୋପ, ମଜଡ଼ା — ତୋପର ମୁହଁ ।

୧୦ । ସିପା — ଦଉଡ଼; ମାଣ — ଜୀବନର ଆୟୁ ।

କେଣ୍ଟ ବନୀଲ ଗଡ ଦୁଆର     ଶଙ୍କା ନୋହିବ ଅବା କାହାର
ଲଙ୍କାରେ ମାତ୍ର ଥିଲା ସଜାଡ଼ି ଦଶମକୁଣ୍ଠା ଯେ । ୧୧ ।

ଏହି ସମୟେ ଜଣାଏ ଚ୍ଚର     ଦେଖ ମହାରାଜା ପ୍ରତାପୀ ବୀର
ଚେମଣାବାବୁ ପଣ୍ଡିଲେ ତାଙ୍କ ସୈନ୍ୟ ଅପାର ଯେ
ମହିମା ବଶୁ ନାହିଁ ଧରଣୀ     ଉଦ୍ଧୃତ ନାହିଁ ପଥରେ ପାଣି
ଦେଖି ଆସୁଛୁ ମୁଁ ଏହିକ୍ଷଣି ଆଖିରେ ମୋର ଯେ
ପୁଣି ପୁଣି କହନ୍ତି ଅନେକ ଲୋକ ଯେ
ମହାରାଜା ବୁଡ଼ିଲ ନଷ୍ଟେ ମୂଲକ ଯେ
କେବୋଲେ ନଷ୍ଟେ ଗଲାଣି ଧର କେବୋଲେ ରାଜା ଭେଟିବେ ପର
କେବୋଲେ କହୁଛି ନୋହିବ ମର ପଡ଼ିବେ ଲୋକେ ଯେ । ୧୨ ।

ଏମନ୍ତେ ଶୁଣି ସେ ନୃପମଣି     ଦୋପର ପରେ ବୁଝିଲ କ୍ଷଣି
ନ ଦଶେ ଗଜ ତୁରଙ୍ଗ ପୁଣି  କେପାରେ ଗଣି ଯେ
ଦେଖିଲ ଲୋକ ହୋଇ କାତର     ବୋଲନ୍ତି ଘୋଟିଆସେ ସାଗର
ଲୋକ ଚଳନ୍ତି କହନ୍ତି ଦେଖ  ତରଙ୍ଗ ମାଣି ଯେ
ଗଜମାନଙ୍କୁ ବୋଲନ୍ତି ଏ ମଗର ଯେ
ଓଠ ନୁଖନ୍ତି ଭାସୁଛନ୍ତି କୁମ୍ଭୀର ଯେ

---

୧୧ । ଧାଡିଁରିଆ ପହଣ୍ଡ ଜଳା—ଦୁର୍ଗ କାନ୍ଥି ଉପରର ସରୁବାଟ କଡରେ ଥିବା ରନ୍ଧ୍ର; ମୁଣ୍ଡ ଲୁଆଣ ଜଣ୍ଡ—ମୁଣ୍ଡ ନୁଆଇଁ ଯେଉଁ ରନ୍ଧ୍ରବାଟେ ଶର ମରାଯାଏ, ଉକ୍ଳୁଣ—ଏକମୁନା; ଆଣ୍ଠୁକଣ୍ଠା—ମଜବୁତ କଣ୍ଟା ।

୧୨ । ଚ୍ଚର—ଦୂତ; ଯେ ଖବର ଜଣାଏ ।

ଯୋଡ଼ବା ଅଶ୍ୱ ଗତକ ଘୁହିଁ    ବୋଲନ୍ତି ମୀନ ଯାଆନ୍ତି ଡେଇଁ
ଫେଣ ପକାଏ ମଣନ୍ତି ତହିଁ ଶ୍ୱେତ ଚାମର ଯେ । ୧୩ ।

ଉଡ଼ୁଅଛି ଯା ଧଣ୍ଡା ବୈରଖ    ପୁଣି ବୋଲନ୍ତି ମହିମା ଦେଖ
ଏ କେତେ କେତେ ଲହରୀମାନ ଆସୁଛି ଉଠି ଯେ
ଗଡ଼ ଶଗଡ଼ ଚଳିବା ଘୁହିଁ    ସୋଲପ ପରି ମଣନ୍ତି ସେହି
ତମ୍ଭୁମାନଙ୍କୁ ବୋଲନ୍ତି ଦେଖି ବୋହିତ ଏଡି ଯେ
ଗୁଣ୍ଡିମାନଙ୍କୁ ସର୍ପ ପରାଏ ମଣି ସେ
ନଳୀମାନଙ୍କୁ କ୍ଷୁଦ୍ର ମୀନରେ ଗଣି ସେ
କେ ବୋଲେ ଅହେ ହେଲ କ ବାଉ    ସାକ୍ଷାତ ସିନ୍ଧୁ ଗର୍ଜି ଆସଇ
ମିଶୁ ଅଛନ୍ତି କେତେ ନୃପତି ସରିତ ପୁଣି ଯେ । ୧୪ ।

ମହାପ୍ରବଳ ଝଞ୍ଜା ଘୁହିଁ    କାହାଧଇର୍ଯ୍ୟ ରହିଲା ନାହିଁ
କେହି ବର୍ଷିଲେ ବିଷାଦ ହୋଇ ମହାନ ଘୁହିଁ ଯେ
କେ ଅବା ତହିଁ ମନେ ବିଚାରେ    ଅବଶ୍ୟହିଁ ତ ମରିବା ଥରେ
କେବଳ ହାଥ ପିଟିବା କାଳ ହେବ କି ନାହିଁ ଯେ
କେହୁ ବୋଲଇ ମରିବାର ପ୍ରମାଣ ଯେ
ଗୁଡ଼ ହେଲେ କାଳିବ ମୋର ଡକ୍ଟୁଣ ଯେ
କେ ବୋଲେ ଆଗୁଁ କହି କି ହେବ    ଯାହା କରିବେ ଏ ବଳଦେବ
ମନେ ହୋଉଛି ଅଖଡ଼େ ପିବ ପରି ପରାଣ ଯେ । ୧୫ ।

---

୧୩ । ଦୋପରି -- ଦୋଚାଲ; ଯୋଡ଼ବା ଅଶ୍ୱଗତି—ଦୁଇ ଗୋଡ଼ ଯୋଡ଼ି ଘୋଡ଼ାର ଯିବାର ଗତି ।

୧୪ । ବୈରଖ—ପତାକା; ଗଡ଼ ଶଗଡ଼—ଗ୍ଲେଟଗାଡ଼ି ଓ ଶଗଡ଼; ସୋଲପ—ଗ୍ଲେଟ ଡଙ୍ଗା ।

୧୫ । ଅଖଡ଼େ—ଅସୁବିଧାରେ ।

ଏମନ୍ତ ଶୁଣି ସେ ନୃପବର                ବୋଲନ୍ତି ଏଯେ ଘୋର ସାଗର
ଘୋଟି ଆସୁଛି କହି ବସୁର ନାହିଁ ମନର ଯେ
ନିଶରେ କର ପକାଇ କରି                ବୋଇଲେ ଦେବ ମନ୍ଦର ଗିରି
ମନ୍ଥି ଦେବ କି ଅଛ ବସୁକି ମନେ ଭ୍ରମୁର ଯେ
ଏହି ସିନ୍ଧୁ ମନ୍ଥନ କରିବା ଯେବେ
କେଉଁ ଯଶ ରତନ ମିଳିବ ତେବେ ହେ
କେବଳ ଲୁଚନ୍ତୁ ସୁର ଅସୁର                ମରି ଏ ମୋତେ ଆଶ୍ୱାସି ଧର
କାଳ କାଳକୁ ଖାରନ୍ତ ରହିପିବ ଏ ଭବେ ହେ ।୧୬।

ଏମନ୍ତେ ବୋଲି ଉଠନ୍ତେ ଫୁଲି                ଫାଟି ଗଲାନି ଶ୍ରୀଅଙ୍ଗ ଚୋଲି
କହିଲେ କାଲି ବୃଟିବା ଗୁଳିଚଳନ ସବୁ ଯେ
ପ୍ରାଣକୁ ଆଶା ରଖିଛୁ ଯେହୁ                କହୁଛି ଏତେ ବେଳୁ ସେ ପାଞ୍ଜ
ମରିବା ଲୋକ ମୋ ପାଶେ ଥାଅ ତେମଣାକାରୁ ଏ
ଭୁକ୍ତା ଛିଣ୍ଡାଇ ଥାଉ ନିଶକୁ ମୋଡ଼ ହେ
କାଳ ଅଛି ଏତିକ ବେଳକୁ ମଡ଼ ହେ
କେ ପାଡ଼ କେତେ ମରଦ ଦାଢ଼ୀ                ଏହି ଠାବରେ ପଡ଼ିବ ସିନା
ଗୋବର ପରି ଗୁଡ଼ିବ ନେଦା ମାଟି ଜମାଡ଼ ହେ ।୧୭।

ଶୁଣି ଏମନ୍ତ ବଚନ କେହି                ନିଦେଶ ନିଃଶଙ୍କେ କର ପକାଇ
ସହି ନପାରି ବୋଇଲେ କେହି ଚାହିଁବ ନାହିଁ ଯେ
ଖାମିନ ବୋଲି ବୋଇଲ ଏଥି                ନୋହିଲେ ନିଜ ଯାଆନ୍ତା ସୂଦା
କେବଳ ଗଣ୍ଡି ଦେଖିବ ମୁଣ୍ଡ ଦେଖିବ ନାହିଁ ଯେ
ଗୁଡ଼ ଦେଖି ଏ ପାଡ଼ମାନଙ୍କୁ ଥରେ ହେ

---

୧୬ । ଆଶ୍ୱାସିଧର—ଉତ୍ସାହ ଦିଅ ।

୧୭ । ଚୋଳି—ଜାକେଟ; ପାଡ଼—ଖାଣ୍ଟି; ନେଦା—ଶୁଷ୍କ ମଳ ।

ଗଡ଼ ଭିତରେ କମ୍ପା ପଶିଛ ଡରେ ହେ
ଗର୍ଦ୍ଦନ ମାର ପଛେ ଗୋସାଇଁ    ଏ କଥା କେହ୍ଣୁ ପାରିବ ସହି
ରଙ୍ଗ ବଦନ ଅଙ୍ଗ ତାଙ୍କର କ୍ରୋଧରେ ଥରେ ହେ । ୧୮ ।

ଶୁଣି ସାନନ୍ଦ ହେ ନରେଶ୍ୱର    ବୋଇଲେ ଏବେ ହେଲା ଗୋଚର
ଏହା ଶୁଣିମା ପାଇଁ ପଡ଼ିଲା ଯିବା କେବଳ ଯେ
ପଇସା ଘରେ ନାହିଁ ଅମ୍ଭର    ସେମ୍ଭାଳ ଦଶବଂଶ ହଜାର
ନ ଯିବେ ପୁଣି ଯୁଝିବା କଥା ହୋଇଲା ମୂଳ ଯେ
ଅଜ୍ଞାକରି ବଳଂପୁ ଶ୍ରୀ ପାଲଙ୍କିରେ ଯେ
ଯାଇଁ ପ୍ରବେଶ ଗଡ଼ ମୁରୁଜ ଦ୍ୱାରେ ଯେ
ପୂର୍ବରୁ ଜଗିଥିଲେ ଯେ ଲୋକ    ଯେଉଁ ଠାବକୁ ଯେତେ ପାଇକ
ଟଞ୍ଜିରଖିଲେ ଗଡ଼ନାୟକ ମାନଙ୍କଠାରେ ଯେ । ୧୯ ।

କାହାକୁ ଶୁଣି ବୋଲନ୍ତି ବାପା    ମୁଖ ଶୁଖାଇ ଦେଇଛ କମ୍ପା
ଦେଉ ସମୁଖ ଘୋଡ଼ା ଶିରେପା ମୁକୁତା କୋଳରେ
କେତେବେଳକୁ ମଉଦ ପଣ    ଏହି ଠାବରେ ବୁଝିବା ଠାଣ
ଦେଖ ବସିଛୁ କେତେ କମାଣ ଜଜାଲ ନଳରେ
ଗୋଡ଼ ବଢ଼ାଇ ସେ କ ଡେଇଁବେ ଜଳୀରେ
ଅମ୍ଭର ତ ନୁହନ୍ତି ଦେବାକୁ ଗିଳରେ
ଘଡ଼ିଏ ମାତ୍ର ଅନାଅ କନା    ପୋଡ଼ିବ ଏକା ବେଳକେ ସିନା
ଭଲ କେମନ୍ତେ କାଟିବ ନାହିଁ ଆମ୍ଭର ଶୂଳ ଯେ । ୨୦ ।

---

୧୮ । ଗର୍ଦ୍ଦନ—ଚଣ୍ଡିଆ ।

୧୯ । ଗଡ଼ନାୟକ—ଦୁର୍ଗର ଅଧ୍ୟକ୍ଷ ।

୨୦ । ସମୁଖ—ସମ୍ମୁଖ; ଶିରୋପା—ପଗଡ଼ି ।

ଆଉ ମୁହୂର୍ତ୍ତ କଣ୍ଟକ ଯାଇଁ    କହନ୍ତି କଷ୍ଟ ବସ୍ତୁର ନାହିଁ
ପିଠି ଉପରେ ଅଛୁ ଯେ ମୁହିଁ ଥାଅ ନିଶ୍ଚିନ୍ତ ଯେ
ବାନ୍ଧି ସେ ପଛେ ଫଡ଼କା ବାନା  ଯେବେ ହୋଇଲେ ଲଡ଼କା ପିଲା
କଡ଼କାରଣି କ କରିବ  ନାଁ। ମୂଳ ହେମନ୍ତ ଯେ
କଲଗୀ ଏ କ ଡେଣା ପାଇଲେ ଏବେ ଯେ
ନଳୀ କାନ୍ଥିକ ଡେଇଁ ଉଡ଼ ମଡ଼ବେ ଯେ
କ ଅବା ତାଙ୍କ ଅଙ୍ଗ ପଥର    କାଟିବ ନାହିଁ ଆମ୍ଭର ଖର
କେ ଜକ କେତ୍ତୁ ଶାମଳ ଚହ୍ଲାପିଙ୍କ ଦଇବେ ଯେ ।୨୧।
କାହା ମୁହୂର୍ତ୍ତ କଣ୍ଟକ ପାଇ    ପିଠିରେ ଠୁକ ବୋଲନ୍ତି ଭାଇ
ଏଣୁ ସକଳେ ଥିବୃଟି ଗୁହିଁ ଅଇଲେ ବାହ୍ନି ସେ
ହାତେ ତୋ ଅଛୁ ଯହିଁ ଜମ୍ବୁର    ଘୋଡ଼ବୁ ଏକା ହୋଇଣ ଧୀର
ହାଥୀ ହୋଇଲେ ନେଇଟି ତେଣେ ପଳିବ ପାଇଁ ଯେ
ମନହାସେ କହନ୍ତି ପୁଣି କାହାକୁ ଯେ
ସବୁ ଧାନେ ତ ଠୁକୁଥାଉ ବାହାକୁ ଯେ
ଲୋକଙ୍କ ଗୁହିଁ ଘୃଣ୍ଟ ଫୁଲଇ    କହନ୍ତି ଆଜି ମୁଖ ହଲାଇ
ଦେଖିବା ଦେଖି କେତେ ଠାଣ ତୋ ମନ ଲୁହାକୁ ଯେ ।୨୨।
ଏରୂପେ କଲେ ଖାତର ନାଶ    ମଧାକରତ ପିନା ଏ ଭାଷା
ମରମ କଥା ଯହିଁ ପ୍ରଶଂସା ଜୀବନ ଆଶା ଯେ
ଗୁଞ୍ଜ ସକଳେ କଲେ ହେମନ୍ତ    ଜଗି ରହିଲେ ସେହୁଁ ସେମନ୍ତ
ବସ୍ତୁର କଲେ ନୋହିବା ଭାଇ ଏ ଲୋକ ହସା ଯେ

---

୨୧। ଫଡ଼କା—ଫଡ଼ ଫଡ଼ ଉଡ଼ୁଥିବା; ହେମନ୍ତ—ଦମ୍ଭ; ଶାମଳ—ବାଜପକ୍ଷୀ, ଲଡ଼କା—ପିଲା।

୨୨। ଠୁକ—ଖୋଞ୍ଚଦେଇ; ଜମ୍ବୁର—ବନ୍ଧୁକ; ଠୁକୁଥାଉ ବାହାକୁ—ବାହାସ୍ଫୋଟ ମାରୁଥାଉ ।

ସରଡାର ସନ୍ଧିରେ ଆପେ ନ ପଶନ୍ତ ହେ
ମନ କଅଁଳ ହେଲା ପଥର ମଣ୍ଡ ଯେ
କି ଦନ ରାତ୍ରି ଆଠ ପହର    ବାନ୍ଧି ରଖିଲେ ଲୋକ କମନ୍ଧ
ମୀନକୁ ବକ ଜଗିଲା ପରି ଜଗିଥାଆନ୍ତି ଯେ । ୧୩ ।

ଯେତ୍ତୁ ମାଗିଲା ପଞ୍ଚ ଆହାର    ଆଜ୍ଞା ପ୍ରମାଣେ ଦେଲେ ସତ୍ତର
ପାଇକ ଲୋକେ ପାଇଲେ ପୂର୍ଣ୍ଣ ପାଞ୍ଜଁଳ ପଡ଼ ଯେ
ଡାଲି କଦଳୀ ବଜ୍ର ଅଙ୍କୁର    ଘୃତ ନବାତ ଦଧି ଶାକର
ସନ୍ଧି ଯାହାମନ କଳିଲା ନେଲା ସେ ଲୋଡ଼ ଯେ
ଅନରୂପରେ ଦେଲେ ଗୁଳ୍ପ ବାରଦ ଯେ
ବୃନ୍ଦାବନ ନାଗରୀ ଠମକ ନାଦ ଯେ
ଆର ହୃଦରେ ବର୍ତ୍ତିବା ପୂର୍ଣ୍ଣ    ଯେମନ୍ତେ ହେଲ ଯୁଦ୍ଧ କାହାଣୀ
ବ୍ରଜନାଥର ଭରସା କୃଷ୍ଣ କମଳ ପାଦ ଯେ । ୧୪ ।

— ୦ —

---

୧୩ । ଘାତର କଣା—ଅମ୍ବ ସଂକ୍ରାନ୍ତ ।
୧୪ । ପଡ଼—ସଜ୍ଜା; ପାଞ୍ଜଁଳ – ଦୁଇ ଗୁଣ ।

# ତୃତୀୟ ଛାନ୍ଦ

(ରାଗ—ଚକ୍ରକେଳୀ)

ଶୁଣ ସାଧୁଜନ ଚୋଷ ଚିତ୍ତରେ
ଏବେ ସମର ହେଲ ଯେମନ୍ତରେ । ୧ ।
ଗଡ଼ ପାଶରେ ପଞ୍ଚଜ ପଡ଼ିଲେ
କେହ୍ନ ଲଢ଼ିବା ଏ ବିଚାର କଲେ । ୨ ।
ବାଣ୍ଟି ହୋଇଲେ ଗୁଣିମୁକା ହୋଇ
ଗୁଣି ଦଳରେ ବାହାରିଲେ ଯାଇ । ୩ ।
ହେଲା କସ୍ତୁମରାଜକୁ ସଙ୍ଗରେ
ଚଇତନ ଦାସ ଚଲେ ଆଗରେ । ୪ ।
ଅଗ୍ନି କଟାଇ ସେ ବାଟ ଛଡ଼ି'ଛ
ତେଲେଙ୍ଗାଙ୍କୁ ଯେଣିଗଲ କଢ଼ାଇ । ୫ ।
ଏଣେ ସାରା ଲସ୍କର ତିଆର
ଆପେ ଚେମାଣିବାବୁ ଏ ବାହାର । ୬ ।

---

୩ । ଗୁଣିମୁକା—ଗୁଣିଦଳ ।
୪ । କସ୍ତୁମରାଜ—ଜଣେ ବର୍ଗୀ ସରଦାର; ଚଇତନ ଦାସ—ଜଣେ ଯୋଦ୍ଧା ।
୫ । ଅଗ୍ନି—ବାଜିଁଶବଣ ।
୬ । ମଡ଼ା ଦେଉଳ—ଢେଙ୍କାନାଳର ରାଜ ବଂଶର ସମାଧି ମନ୍ଦିର ।

ମଡ଼ା ଦେଉଳ ଆଡ଼େରେ ଚଡ଼ାଇଁ
ଶୁଭେ ନାଗରା ଧ୍ରି ଧ୍ରି ଧାଇ ଧାଇ । ୭ ।
ପାଇଁ ପିଆଦା ଢାଲ ତରୁଆର
ବାହାରିଲେ ଦଶ ବିଶ ହଜାର । ୮ ।
ଆଠ ଦଶ ହଜାର ହେଲେ ସଜ
ଅତି ପ୍ରବଳ ସେ ବରକନ୍ଦାଜ । ୯ ।
ଘେନି ଟଙ୍କୁଣିଆ ମାନେ ଟଙ୍କୁଣ
ପାଞ୍ଚ ସାତ ହଜାର ଗଲେ ପୁଣ । ୧୦ ।
ଗଡ଼ଦ୍ୱାର ସନମୁଖେ ଅପାର
ହେଲେ ବାହାର ବହୁ ଅଶ୍ୱଆର । ୧୧ ।
ହାତୀ ପଲ ପଲ କରି ଆଗରେ
ଚଳାଇଲେ ବନ୍ଧୁକ କାଣ୍ଡ ଉପରେ । ୧୨ ।
ଗୁଳି ବାରୁଦ ଗଡ଼ମାନ ଭରି
ଲଦା ବଳଦ ନୋହେ ଲେଖା କରି । ୧୩ ।
ତୋପମାନ ଚଳାଇଲେ ପ୍ରବଳ
ଯୋଗୁ ମଙ୍କିଷି ଦଣ୍ଡ ଆଠ ହଳ । ୧୪ ।
ଘେନି କମାଣ କନ୍ଧରେ ତୂଣୀର
କେତେ ତୀରନ୍ଦାଜ ହେଲେ ବାହାର । ୧୫ ।

---

୧୦ । ଟଙ୍କୁଣିଆ — ଟଙ୍କୁଣ ଧରିଥିବା ପାଇକ ।

୧୧ । ସନମୁଖେ — ସମ୍ମୁଖରୁ; ଆଗୁଆର — ଘୋଡ଼ସବାର ।

୧୩ । ଗଡ଼—ସ୍ଲେଟଗାଡ଼ି; ଲଦାବଳଦ—ଥୋରିଆ ବଳଦ ।

୧୫ । କମାଣ— ଧନୁ; ତୂଣୀର — ଶରମୁଣା ।

ହାଥୀ ପରେ ଗଣ୍ଡିଆ ପେଟଶଗ
ଓଟ ଉପରେ ଜଜାଲ ଜମ୍ବୁର । ୧୬ ।
ଆଗେ ବାଣ ନିଶାଣକୁ ଚଳାଇ
ପଛେଁ ଫସାର ଅନ୍ଧାର ଢଗଇ । ୧୭ ।
ତେଣେ ତେଲେଙ୍ଗା ବଳଙ୍କ ସଙ୍ଗରେ
ଚଇତନ ଦାସ ଫୁଟି ଅଗରେ । ୧୮ ।
ଅଧ ଅଗରେ ହେଲେନି ବାହାର
ଏଛ ସମୟେ ହୋଇଲା ଗୋଚର । ୧୯ ।
ଶଏ ପଞ୍ଚାଶ ଜଣ ଥିଲେ ଜଗି
ଆଗେ ଆଖେଢ଼ ନଳୀ ଦେଲେ ଦାଗି । ୨୦ ।
ବାଳିବନ୍ଧ କି ସମ୍ଭାଳେ ସରିତ
ଟେକା ମାଇଲେ କି ଘୁଙ୍ଗେ ପର୍ବତ । ୨୧ ।
ସିନ୍ଧୁ ପ୍ରାୟେତ ଯୋଟି ଆସୁଛନ୍ତି
ତାଙ୍କ ବଳେ କି ଅଟକ ପାରନ୍ତି । ୨୨ ।
ପେଲି ପ୍ରବଳେ ଆଗସରି ଗଲେ
ଯାଇଁ ଲୋକେ ହଜୁରେ ଜଣାଇଲେ । ୨୩ ।
ଅଗ୍ର ଫୁଟିଲେ ବରଗୀ ମହିମା
କେତେ ଫଉଜ କେ ଅବା ଗଣିମା । ୨୪ ।

---

୧୬ । ଗଣ୍ଡିଆ, ପେଟଶଗ—କ୍ଷୁଦ୍ର ତୋପ, ଜଜାଲ—ଶ୍ରେଷ୍ଠ ତୋପ, ଜମ୍ବୁର—ବଡ଼ ବନ୍ଧୁକ ।
୨୦ । ଆଖେଢ—ଅଟକାଇ ।
୨୨ । ସରିଗଲେ—ଘୁଞ୍ଚିଗଲେ ।
୨୪ । ବରଗୀ—ମରହଟ୍ଟା ସୈନ୍ୟ ।

ଷ୍ଟେଇ ସାହିରୁ ଅଇଲେଣି ବଳ
ଆମ୍ଭେ ନ ପାରିଲୁ ଆଜ ସମ୍ଭାଳି । ୨୫ ।
ଏହା ଶୁଣି ଆଜ୍ଞା କଲେ ରଜନ
ଦେଖି ଅମ୍ଭଲୋକେ ଯାଅ ବହନ । ୨୬ ।
ତୁମ୍ଭେ ଅଟକ ଥାଅ ମାସ ପାଇଁ
ଆମ୍ଭେ ପଛେ ପଛେ ଯାଉ ଅଛୁଇଁ । ୨୭ ।
ଶୁଣି ଶୂରବୀର ଲୋକେ ବାହାର
ଧରି ଧାଇଁଲେ ଯେଝା ହତିଆର । ୨୮ ।
ରେଷ୍ଟ ରଙ୍ଗରେ ଶୁଭୁନାହିଁ କଛି
ଗୁଳି ବରଷା କେବଳ ହୋଇଛି । ୨୯ ।
ବୃକ୍ଷମାନଙ୍କର ନାହିଁ ପତର
ଫାଟି ଯାଉଅଛି କାଠ ପଥର । ୩୦ ।
ଦାଗି ବନ୍ଧୁକ ହଜାର ହଜାର
ଦଶଦିଗ କରନ୍ତି ଅନ୍ଧକାର । ୩୧ ।
ଚପଲ ଆସୁଛନ୍ତି ସେହି ଧୂଆଁରେ
ପାଇଁ ମିଳିଲେ ବୀର ସରଦାରେ । ୩୨ ।
ଦୁଇ ବଳଙ୍କର ମେଣ୍ଟ ପଡ଼ିଲା
ଅତି ପ୍ରବଳ ଲଢ଼ାଇ ଲାଗିଲା । ୩୩ ।
ଜଣଜଣଙ୍କ ଯେତେ ବନ୍ଧା କରି
ତକ୍କୁଣିଆ ବେଢ଼ିଲେ ତିନି ସ୍ତରି । ୩୪ ।

---

୨୫ । ଷ୍ଟେଇ ସାହି—ଢେଙ୍କାନାଳର ସହର ସାହି ।
୨୭ । ଅଟକ – ଅଟକାଇ ।
୩୨ । ବୀର ସରଦାର – ଢେଙ୍କାନାଳର ରାଜା ।
୩୩ । ମେଣ୍ଟ । ଦୁଇଦଳ ମୁହାଁମୁହିଁ ।

ଆଡ଼ ଦାଣି ଉଦ୍ଧଥିଲେ ସମ୍ମାନ
ଫଣିଗଲ ମରମଥାନେ ଗୁଳ । ୩୫ ।
ଜୀବ ସିବାପାଏ ନୋହ୍ନ ନାସତ
ଫିଟି ଅଛି କାହାର ଖଣ୍ଡା ହାଥ । ୩୬ ।
ଜଣ ଜଣକେ ସେ ଦ୍ରୋଣ ସମାନେ
ରଣ ପାଗ କଲେ ଅନ୍ତ ସ୍ମରନେ । ୩୭ ।
ଗୁଳ ଗଳ ଗଲନ କା ହୃଦର
ତେବେ ଡାକୁଛି ଖଳ ମାର ମାର । ୩୮ ।
ଗ୍ଲେଟ ବସିଲନ କାହା ମୁଖରେ
ଖଣ୍ଡା ହାଥ ସେ ବଞ୍ଚୁଛି ପ୍ରକ୍ଷରେ । ୩୯ ।
କାହା ଗୋଡ଼ ଖଣ୍ଡି ପଡ଼େ ଧରଣୀ
ପାଇଁ ରକ୍ତର ମିଶ୍ରଅଛି ହାଣି । ୪୦ ।
ଗୁଳ ଉପରେ ତ ଗୁଳ ବାଜଲ
ତେଣୁ ପ୍ରାଣ ପ୍ରୟାଣ ହୋଇଗଲ । ୪୧ ।
ବଡେ ରଜା ମହାନ୍ଦ ବାହାଦୁର
ତେଲେଙ୍ଗାଏ ଅଛନ୍ତି ଗହଣର । ୪୨ ।
ପାଣି ସିନା କାଟିପାରେ ପାଣିକ
ଜାତ ସେବ୍ସ ରୂପେ କାଟେ ଜାତକ । ୪୩ ।

---

୩୬ । ନାସତ -- ନାସ୍ତେଜ ।
୪୧ । ପ୍ରୟାଣ – ଶେଷ ।
୪୩ । ଜାତ ସେବ୍ସରୂପେ କାଟେ ଜାତକ—ପାଣି ଯେପରି ପାଣିକୁ କାଟେ, ସେହିପରି ମରହଟ୍ଟା ସୈନ୍ୟଦଳରେ ଥିବା ତେଲେଙ୍ଗା ସୈନ୍ୟମାନଙ୍କୁ ଢେଙ୍କାନାଳର ତେଲେଙ୍ଗା ସୈନ୍ୟମାନେ ସଂହାର କଲେ ।

ଦେବତାଙ୍କ ଶକ୍ତି ଦେବେ ଜାଣନ୍ତି
ଅସୁରଙ୍କ ମାୟା ଦୈତ୍ୟେ ବୁଝନ୍ତି । ୪୪ ।
ଦୁଇବଳ ହୋଇଲେ ମିଶା ମିଶି
ଷଣେ ଷଣେ କ ମେଣ୍ଢେ ହେଲେ ଆସି । ୪୫ ।
ଆଡ଼ ଭୂଷି ତକ୍ଷଣକୁ ତକ୍ଷଣ
ଚଡ଼ ଗ୍ରୁଡ଼ ଢାଅନ୍ତି ନେଇ ପ୍ରାଣ । ୪୬ ।
ପିନ୍ଧି ପିଠି ଛୁରିକାଳ ଭୂଷନ୍ତି
କନ୍ଧି ଫାଶ ଆଣ୍ଟୁ ଆଳ ବସନ୍ତି । ୪୭ ।
ଚୋଖି ରଖିଥାନ୍ତି ଆଖି ଆଖିରେ
ଦେଖି ଦେଖି କେ ଡାକ ହାକ ମାରେ । ୪୮ ।
ଲକ୍ଷି ପଡ଼େ କାହା ହୃଦେ ତକ୍ଷଣ
ଆଖିବାଟେ ଗୁଡ଼ଯାଏ ପରାଣ । ୪୯ ।
କେହୁ ହୋଗ ହୋଗ ବୋଲି ଡାକଇ
ତେଣି ତକ୍ଷଣ ମଝିରେ ଢୁକଇ । ୫୦ ।
ଆଡ଼େ ଚେରଛ ଭୂଷିଦେଇ ନେଇ
ଫୁଟି କଙ୍କାଳ ପଡ଼ିଗଇ ମଝି । ୫୧ ।
କୃପାକଲେ ପ୍ରଭୁ ଚନ୍ଦ୍ର ଶେଖର
ଲୋକେ ବଳ ମାଇଲେ ରଜାଙ୍କର । ୫୨ ।
ଯାହା ପ୍ରବଳ ହୋଇ ଆସୁଥିଲେ
ଆଉ ନପଶି ଅଟକ ପଡ଼ିଲେ । ୫୩ ।
ତିନି ପରସ୍ତ ହୋଇଗଲେ ଭକ୍ତି
ଚଡ଼ଚଡ଼ ଆଗନଳୀ ଫିଟାଇ । ୫୪ ।

---

୪୫ । ମେଣ୍ଢା — ମୁହାଁ ମୁହିଁ ।
୫୪ । ତିନି ପରସ୍ତ — ତିନି ଭାଗରେ ବିଭକ୍ତ ।

ପୁଣି ମଝିଲୋକ ଆଗ ହୁଅନ୍ତି
ସେହିଲୋକେ ଧରି ଦାଗି ହୁଅନ୍ତି । ୬୫ ।
ପୁଣି ମତ୍ତ ଲୋକେ ହୋଇ ହାଜର
ଦାଗି ହୁଅନ୍ତି ଅତି ଚରଚର । ୬୬ ।
ଆଗ ଲୋକେ ପୁଣି ଭେଟ ପକାଇ
ବେଗେ ହାଜର ହୋଇଥାନ୍ତି ଯାଇ । ୬୭ ।
ଦଣ୍ଡେ ମାତ୍ରକ ନକରି ବିଶ୍ରାମ
କଲେ ଦେବଙ୍କୁ ଦୁର୍ଲଭ ସଗ୍ରାମ । ୬୮ ।
ଗୁଳ ଗୋଟିଏ ନ ପଡେ ତଳରେ
ଯାଇ ବସଇ କାହା କପାଳରେ । ୬୯ ।
କାହା ଗୁଣ୍ଡରେ କଙ୍କାଳେ ବାହାର
ପେଟ ଅବା ଫୁଟିଯାଏ କାହାର । ୭୦ ।
କଉଁ ଲୋକର ଚଣ୍ଡି ଯାଏ ଫୁଟି
ଭାଙ୍ଗି ପକାଏ କାହାର ଛକାଠି । ୭୧ ।
ଯାଇଁ ବାଜଇ କାହାର ଗୁଣ୍ଡରେ
ଗୁଣ୍ଡ କନ୍ଦୁକ ଭଗେ ସେ ଅଥିରେ । ୭୨ ।
ଭାଙ୍ଗି ପକାଏ କାହା ଜାନୁହାଡ଼
ସେ ଯେ ଢୋଷରେ ହୋଇ ନଡ଼ବଡ଼ । ୭୩ ।
କାହା ଥାନ ମୂଦୁସରେ ହାକୋଡ଼େ
ଫୁଲ ପରଏ ସେହି ଝଡ଼ିପଡ଼େ । ୭୪ ।

---

୭୧ । ଛକାଠି—ପଞ୍ଜରା ହାଡ଼ ।
୭୨ । ଅଥିରେ—ଅସ୍ଥିରତାରେ ।
୭୪ । ଥାନ ମୃଦୁସ—ଆଖି ଓ କାନର ମଝିସ୍ଥାନ ।

କାହା ବଦନେ ତେରଛା ବାଜଲା
ଦନ୍ତ ପାଟିରୁ ଫାଳେ ଯେଣିଗଲା । ୬୫ ।
ଥୁ ଥୁ କରି ପକାଏ ସେ ରକତ
କଥା କହିବାକୁ ନୋହେ ଶକତ । ୬୬ ।
ବେଳ ବେଳକେ ପଦର ସତର
କଉଁ ଜଆରେ ଲେଥ ବାର ତେର । ୬୭ ।
କହୁଁଥର ଆଠଦଶ ଝଡ଼ନ୍ତ
କଉଁ ଜଆରେ ପଞ୍ଚଶ ପଡ଼ନ୍ତ । ୬୮ ।
ତେଣ୍ଡେ ଫଉଜ କଷ୍ଟମ ଗଜର
ପଡ଼ିଗଲେ ଲେଥ ଲେଦେ ସୁମାର । ୬୯ ।
ଯେବା ବଞ୍ଚିଲା ଗଲା ଘାଆ ହୋଇ
ଝୁଣ୍ଡ ନୋହୁ ଗୋଟିଏ ମାଝ ନାହିଁ । ୭୦ ।
କୁଢ଼ କୁଢ଼ ମଡ଼ା ପଡ଼ିଅଛନ୍ତ
ଟଙ୍କ ହୋଇଲା ରକତରେ ଷେତ । ୭୧ ।
ଯେବା ପଛେ ଆସୁଥିଲେ ଭଜିଲେ
କେତେ ଡଙ୍କୁଣ ନଳୀ ଗୁଡ଼ିଗଲେ । ୭୨ ।
ପାଗ ମଥାରୁ ଗୁଡ଼ି କେ ପକାଏ
କେହୁ ବାଙ୍କୁ କଟାରି ଫିଙ୍ଗି ଧାଏଁ । ୭୩ ।

---

୬୫ । ତେରଛା — ବଙ୍କାହୋଇ ।
୬୬ । ଶକତ—ସମର୍ଥ ।
୬୭ । ଜଆରେ—ଥରରେ; ଲେଥ—ମଡ଼ା ।
୭୦ । ଘାଆ—କ୍ଷତାକ୍ତ ।
୭୨ । ଭଜିଲେ—ପଳାୟନ କଲେ ।
୭୩ । ବାଙ୍କୁ କଟାରି—କଟାରି ଜାତୀୟ ଅସ୍ତ୍ର ।

କାହା ପାଖେ ସଜାଲେକ ମିଳନ୍ତେ
ରଖ ବୋଲି ଚରଣ ଧର ଦାନ୍ତେ । ୭୪ ।
କଉଁ ବୀର ତହିଁ ହାଥ ଚଳାଇ
ପ୍ରାଣ ନେଲା ନାସତ ଆଜ୍ଞ ନୋହୁ । ୭୫ ।
ଏହୁ ରୂପରେ ପହଡେ଼ ଲଢ଼ାଇ
ଶୂନ୍ୟେ ଉଡ଼ି ନ ପାରିଲେ ଚଢ଼ାଇ । ୭୬ ।
ଢଗ ନ ଦଶିଲା ଧୂଆଁ ଘେବାରେ
ମଣି ଭରମ ହୋଇଲା ଦବାରେ । ୭୭ ।
ବ୍ୟାଘ୍ର ମୃଗ ଆଦି ଗଲେ ପଳାଇ
ଭୟେ ଦୂରରେ ସେ ରହିଲେ ଯାଇଁ । ୭୮ ।
ପୂର୍ବେ ଲଙ୍କା ଲଢ଼ାଇ ଯା ଗୀତରେ
ଶୁଣୁ ଥାଇଁ ଏବେ ସେହି ମତରେ । ୭୯ ।
ଗଲ ଉନ୍ନତ ନଖ ପ୍ରାୟ ବହି
ଗିରି ପ୍ରାଏ ମଣ୍ଡା ପଡ଼ି ଦଶଇ । ୮୦ ।
ଦେଖାଗଲା ନାଚବାର କବନ୍ଧ
ଥାଉଁ ଥାଉଁ ନୟନ ହେଲା ଅନ୍ଧ । ୮୧ ।
ତହୁଁ ବଇରୀ ହାର ପଳାଇଲେ
ଜୟ କରି ସଜନ ଲେଉଟିଲେ । ୮୨ ।
ଏଣେ ମୂର୍ଚ୍ଛାରେ ଗୁଣ୍ଡି ଜାଗନ୍ତେ
ଉଡ଼ିଗଲେ ପଞ୍ଜ ଅବା କେତେ । ୮୩ ।

---

୭୪ । ତରଣ—ଘାସ; ତରଣ ଧରି ଦାନ୍ତେ—ଅସହାୟତା ପ୍ରକାଶ କରି ।
୮୧ । କବନ୍ଧ—ମୁଣ୍ଡନଥିବା ଶରୀର ।

ଜଡ଼ଗଡଲ ବା କେତେ ଘୋଡ଼ା ଘୋଡ଼ୀ
କେତେ ତମ୍ବୁ କନାଟ ନେଲା ଛଡ଼ି । ୮୪
ଗୋଳା ଗୋଳ୍ଟିକେ ହଣ ବଂଶ ଯନ୍ତ୍ରିଁ
ଜଡ଼ ସାଆନ୍ତ ଭୁଜା ପ୍ରାପ୍ତ ହୋଇ । ୮୫ ।
ସାର ଫଉଜେ ପଡ଼ଗଲା ହାଲ
ସବୁଠାରେ ଘାଉଆ ପଲ ପଲ । ୮୬ ।
କେତେ ମଲେ ସେ ହେଲା ନାହିଁ କଳ
ଯନ୍ତ୍ରିଁ ଦେଖିବ ଉକା ହାଲ ହୋଲି । ୮୭ ।
ଗୁଳା ବାଜରେ ସେଠାରେ ନରନ୍ତି
କୋଶେ ଘୁଞ୍ଚି ପଡ଼ିଲେ ସୈନ୍ୟଯାଇଁ । ୮୮ ।
କେହୁ ବୋଲଇ ହେଲାକ କରମ
ଏବେ ଅନର୍ଥ କଲା ରଜାରାମ । ୮୯ ।
କେହୁ କାନ୍ଦବୋଲେ ମଞ୍ଜୁକ କଲ
ଢେଙ୍କାନାଳରେ ବଂଶ ବୁଡ଼ାଇଲା । ୯୦ ।
କେ ବୋଲଇ ହାହାରେ ବେଟା ମେର
କୈସେ ଗୁନ୍ ବସୋରୁଁ ମେ ତେରା । ୯୧ ।
କେହୁ କାନ୍ଦଇ ହାହା ମେରା ଭୟା
କ୍ୟା ଗୁନାହ୍ଁ ମୁଝ୍‌କୋ ଛୋଡ଼୍‌ଗଏ । ୯୨ ।

---

୮୬ । ହାଲ—ଆତଙ୍କ ।
୮୭ । ହାଲ ହୋଲି—ସନ୍ଦନ ସେଳ ।
୮୮ । ପଡ଼ିଲେ—ବିଶ୍ରାମ ନେଲେ ।
୯୧ । ବସୋରୁଁ—ଭୁଲିବ ।
୯୨ । ଗୁନାହ—ଅପରାଧ ।

କେହୁ ବୋଲେ ଦା ବେଣୀ ମେଞ୍ଚ ଗ୍ଲେଣୀ
ହାହା ଦମାଦ ଭପ୍ସା ଶିର କାଟି । ୯୩ ।
କେ ବୋଲେ ଧନ ର ରୁପେପ୍ସା ଯୋଡ଼ୀ
ଚେପ୍ସା ମେଘ ଚୋପକ ମାରେ ଉଡ଼ି । ୯୪ ।
କେ ବୋଲଇ କ୍ୟା ଲପ୍ସା ଖଡ଼ ଇ
ଛାଲ ଫୁଟି ଯେ ଗୀଗ ମେଗ ଗୁଇ । ୯୫ ।
କେ ବୋଲଇ ଘାଇଲ ହୁଆ ହାଟୀ
ଗୁଲ ଲାଗ୍‌ଗା ପାଓଁମୁ ଜାଣ ନାଠି । ୯୬ ।
କେହୁ ଗୁଣ୍ଡି ପରେ କର ଠକଇ
ହାଏ ମେଗ ବାବା ବୋଲି ଡାକଇ । ୯୭ ।
କେହୁ ଭୂମିରେ ପଡ଼େ ଧା ଧା କରି
କେହୁ ପାଦୁଁ କାଣ୍ଡ ଫଳ ଉଚ୍ଚାରି । ୯୮ ।
କାହିଁ କାହାକୁ ଖୁଆନ୍ତି ମାଜୁମ
ଗୁଣ୍ଡ କାଢ଼ନ୍ତି ପାଜଛନ୍ତି ଝାମ । ୯୯ ।
କେହୁ ଶ୍ୱଶୁରକୁ ମାଟି ଦେଉଛନ୍ତି
କେହୁ ମଡ଼ଲାକୁ ନେଇ ଦହୁଛନ୍ତି । ୧୦୦ ।

---

୯୩ । ଦମାଦ — ଜୁଆଇଁ ।

୯୫ । ଛାଲ — ଗୁଣ୍ଡି ।

୯୯ । ମାଜୁମ — ମୋଦକ, ଝାମ — ନେଡ଼ା ।

୧୦୦ । ମାଟି ଦେଉଛନ୍ତି — ଶେଷକୃତ୍ୟ କରୁଛନ୍ତି — କୌଣସି ବ୍ୟକ୍ତି ମରିଯିବା ପରେ ତାହାକୁ ଶ୍ମଶାନକୁ ନେବା ପୂର୍ବରୁ ତାହାର ପିଲାମାନେ ତାହା ମୁହଁରେ ମାଟି ଦେଇ ଥାଆନ୍ତି ।

କେତୁ କାଣ୍ଡ କାଟି ଘାଆ ପିଅଇଁ
କାହା ଘାଆ ରକତ ନ ରହଇ । ୧୦୧ ।
ଏହି ରୂପେ ସବ ଲୋକେ ଆକୁଳ
ଯନ୍ତି ବୁହିଁବ ନେତ୍ରେ ଅଶ୍ରୁ ଜଳ । ୧୦୨ ।
କପି ପାଞ୍ଚନ୍ତି ଠଠାଗ୍ର ବଳାଗ୍ର
ଅଜ ରାତ ସବୁଙ୍କୁ ନେବେ ମାର । ୧୦୩ ।
କେ ବୋଲଇ ଛଳ ଯିବା ପଳାଇ
କେ ବୋଲଇ ବାଟ ପାଇବା କାହିଁ । ୧୦୪ ।
ଠାବେ ଠାବେ ଜଗିଛନ୍ତି ଚୂହାଡ଼
କାଟି ପକାଉଛନ୍ତି ହାଥ ଗୋଡ଼ । ୧୦୫ ।
କେ ବୋଲଇ ମୁଁ ଶୁଣିଲି ଘରରେ
ଏହି ଲଟା କାନ୍ଥେ ଛନ୍ତି ରହିରେ । ୧୦୬ ।
ନଳୀ କାଣ୍ଡ ଧନୁ କରେ ତାଙ୍କର
ଛପି ପଡ଼ିଛନ୍ତି ପାଞ୍ଚ ହଜାର । ୧୦୭ ।
କନ୍ଧବୃତ୍ତ ସଣକ ସେ ମିଶିବେ
ଆଜ ଗୋଟିକଠାରୁ ଦାଇ ନେବେ । ୧୦୮ ।
କେ ବୋଲଇ ଚୁପିସା ନେବା ପାଇଁ
ଜାଣି ମରିବାକୁ ଆସି ଅଛୁଇଁ । ୧୦୯ ।

---

୧୦୧ । ଘାଆ—କ୍ଷତ ।
୧୦୩ । ଠଠାଗ୍ର — ଅଟ୍ଟାଗ୍ର ।
୧୦୫ । ଚୂହାଡ଼ -- ବଣୁଆଜାତିର ଲୋକ ।
୧୦୬ । ଲଟା କାନ୍ଥେ—ବଣ କଡ଼ରେ ।
୧୦୮ । ଦାଇନେବେ—ହାଣି ପକାଇବେ ।

ରଜା ରମର ଝାଡ଼ନେଲ କାନ
ପ୍ରାଣ ଦାନ ହିଁ ବୁଝିଦେଲ ମିନା । ୧୧୦ ।

ଏତେ ଜଙ୍ଘୀତ କାହିଁ ନାହିଁ ରଜା
ପିବ ଚେମଣାବାବୁ ମାଇ ମଜା । ୧୧୧ ।

କେତେ ଏହ୍ୱମଣ୍ଡ କେ ତା କହ୍ୱବ
କହ୍ୱଲେ ତ ଲଙ୍କା ପୋଥି ହୋଇବ । ୧୧୨ ।

ଆଉ ଗ୍ରନ୍ଥ ପୁଣି କହୁ ଚରିତ
ଗୀତେ କହ୍ୱବ କବ ବ୍ରଜନାଥ । ୧୧୩ ।

—o—

୧୧୧ । ଜଙ୍ଘୀ—ଚରିତ୍ରହୀନ ।

୧୧୨ । ଲଙ୍କା ପୋଥି—ରମାୟଣ;ରମାୟଣରେ ଲଙ୍କା ପୁଦ୍ଧ ଯେପରି ବସ୍ତୃତଭାବରେ ବର୍ଣ୍ଣିତ ହୋଇ ଏକ ଭୟଙ୍କର ଯୁଦ୍ଧର ବିବରଣ ପ୍ରଦତ୍ତ ହୋଇଅଛି, ଏହା ସେହ୍ୱପରି ହେବ ।

# ଚତୁର୍ଥ ଛାନ୍ଦ

( ରାଗ—ଆହାରୀ )

ଏମନ୍ତେ ରସିକ ଅଣ୍ଡ କଞ୍ଚୁକ ନଗଡ କଟ୍ଟୁଣ୍ଟଁ ଶୁଣ
ଦାଗିଲେ ବରଗୀ ଗଡଦ୍ୱାରେ ଲଗିବାକୁ ଜେତନ୍ତ ମତେ କମାଣ
ଜେ ଗୁଳା, କବାଟରେ ଯାଇଁ ଲଗିଲ
କଉଁ ଗୁଳା ଭାଙ୍ଗି ମହା ନେଇ ଚଢ଼ିପଡ଼ି କେତେ ଗଛ ଭାଙ୍ଗିଲ । ୧ ।

କଉଁ ତୋପ ଫିଟି ଢେଳାଗଲା ଛୁଟି ଗୋଣ୍ଡା ଦୁଇ ଗୁଣ ଗୋଟାକୁ
ଉପରେ ଉଦରେ ଫୁଟି କଉଁ ଗୁଳା ଗରଜାଇ ଦେଲା ଲଟାକୁ
ଜେ ବାଜ, ଭାଙ୍ଗି ଗଡ଼ାଇଲା ପଥରେ
କଉଁ ଗୁଳା ଏତେଣ୍ଡ ଧାଇଁ ଦେଲାଛି ନେଇ ଗୁଳା ହୋଇନାହିଁ ପଥରେ । ୨ ।

ଜେ ଗୁଳା ବାଜଇ ମୁଣ୍ଡ ଢେଳାଗଲା ଭାଙ୍ଗି ଉପରେ ଭାଙ୍ଗିଆର
କଉଁ ଗୁଳା ଅସି ପଶିଯାନ୍ତେ ଲସିଗଲା ଟେକେଣ୍ଡ ବଡ଼ ଦୁଆର
ଏ ରୂପେ, ଦାଗିଲେ ଅନେକ କମାଣ
କେ ଅବା ବାଜିଲା କେବା ଝଡ଼ିଗଲା ଭଏ ପାଇଲେ ପାଇକାଣ । ୩ ।

---

୧ । କମାଣ—ତୋପ ।

୨ । ଗୋଣ୍ଡା ଗୋରଣ୍ଡା—ପଥର ଭର୍ତ୍ତି କରାଯାଇ ବାଉଁଶରେ ତିଆରି କରାଯାଇଥିବା ସରୁ ଗୋଲଣ୍ଡା—ଗଡକାନ୍ଥର ଦୃଢ଼ତା ବୃଦ୍ଧି ପାଇଁ କାନ୍ଥ କଡରେ ବସାଯାଇଥାଏ; ପଥରେ—ପଥରକୁ ।

୩ । ଲସିଗଲ—ଦବିଗଲା; ପାଇକାଣ—ପାଇକମାନେ ।

ଚତୁର ମନ୍ତ୍ରୀ ଶ୍ରୀରଘମନ୍ତ୍ରୀ ନୃପତି ଗ୍ରନ୍ଥ ମୁହୂର୍ତ୍ତ ବୃଥାପାଇଁ
ଏମନ୍ତ ଅନୁମାନ କରି ବସାଇ ତୋପମାନ ଦେଲେ ଓଗାଇ
ଗୋଟିଏ, ଗୁଳା ନ ନଡ଼ିଲ୍ ଚଳକୁ
ବାଜି ଦଶହଂଶ ଲୋକ କରି ନାଶ ମନ୍ତ୍ରି ଦେଲା ନେତେଡ଼ ବଳକୁ । ୪ ।

ନାନା ନଟକୁଟ ଛଟ ମଟ ଧଟ ଜମା କଲେ ତାହାଙ୍କର
ଶୃଙ୍ଗଖୋଳା ଲୋକ ଅଙ୍ଗଢାଳଣ ଯେବେ ଗୁଳି ବାଜଇ ତତପର
ମୁରୁଜ, ବନାଇବେ ଅବା କି କରି
ପଞ୍ଚ ଦଶେ ମୁଣ୍ଡ ବନ୍ଧ ସେହିଠାକୁ ଗୁଳି ମାରନ୍ତି ପୋଖି ଧରି । ୫ ।

ଅଳ କରିବାକୁ ଭଳ ତରୁଣ ସେ ଚଳାଇ ଆସନ୍ତେ ସାହସେ
ଶଅ ଶଅ ହୋଇ ନମ୍ବୁ ଫିଟଇ କି ମଜ୍ଜା ଗୋଟିଆଇବେ ସେ
ଜଳକା, ଦେଖିଲେ ଥୁଅନ୍ତି ଜଳୀକି
ନଳୀ କି ଦାଗି ଦେଲା ବେଳେ ନୃପତି ସନ୍ଧିକି ଲାଗଇ ଭେଳକ । ୬ ।

ଯେତେଣେ ବାହାରିଲେ ଜଣେ ହେଲେ କାହିଁ ଗୁଳି ବାଜି ମରଇ
ଢଗି ଗଲବେଳେ ଜଗି ବସିଥାନ୍ତି ସାଞ୍ଜ ସାଟବଲୀ କରେ ନେଇ
ଦଖିଲେ, ଗଜ ବୃଥା ତାଙ୍କୁ ଚୂହାଡ଼
ଗାଧୋଇଲା ଠାରେ ଧରିଥାନ୍ତି ତଟେ ଲୁହା ଠେଙ୍ଗା ଗାଳ୍ ଦୁଆଡ଼ । ୭ ।

---

୫ । ଶୃଙ୍ଗ — ମୃଦଙ୍ଗ; ମୁରୁଜ ଯୁଦ୍ଧସାମଗ୍ରୀ ରଖିବା ପାଇଁ ନିର୍ମିତ ଘର ।

୬ । ତଢ — କଞ୍ଚ; ଅଳକରିବାକୁ — ବନ୍ଧୁ ସୈନ୍ୟସାମନ୍ତଙ୍କୁ ଏକା ବେଳେକେ ଚଳାଇବାକୁ; ଜଳୀ — ଜଳପୂର୍ଣ୍ଣ ଗଡ଼ଖାଇ ।

୭ । ଚୂହାଡ଼ — ବନ୍ଧୁଆଜାତର ଲୋକ; ଦୁଆଡ଼ — ବଡ଼ଠେଙ୍ଗା ।

ଏହି ରୂପେ ବନ୍ଦୀ ହୋଇ ଚେତେ ବହୁ ଫଉଜ ପଡ଼ିଗଲେ ବନ୍ଦୀ
ଭବାମି କାଳକୁ କେ ସନାପ୍ରମକୁ ଚଉଧୁରି କ କେବା ଜାଣ
ନେମେଣା ବାବୁ ବରସମନ ହୋଇ
ଏ ରୂପେ ବଡ଼ ଜାବଣରେ କହିଲେ ସବୁ ସରଦାରେ ଡକାଇ । ୮ ।

( ଖୋରଠା ଭାଷା )
ଅବ ସବ ସରଦାର ବଇଠେ
ଏକଠୋ ଭଗଡ଼ ହାଥ ନ ଆୟା ଭଲେ ଭଲେ ଭୂମ ସୂବେ ।
ତାଳ ଡାଲ ଭର ଫୈସା ଲୋକେ ହୋଇ ଅବ୍ ମାରତୋ କାଁ,
ଥୋଡ଼ାଗଡ଼ ଟୁକ୍ ଲଡ଼ନେ ନହିଁ କ୍ୟା କରୁଁ ଯାକେ ବଙ୍ଗାଲ । ୧ ।

ଲଖ ଫଉଜ ଅବ୍ ସାଥ ହୈ ମେରା କେତା ହାଥିମି ଘୋଡ଼ା,
ରାଜା ମୁଣ୍ଡ କ୍ୟା କରେଗା କାମ ନହିଁ ବଡ଼ ଥୋଡ଼ା । ୨ ।

ଯାତେ ଯାତେ କେତା କାଁ ଲିଆ ତୋପକ ମାରେ,
ବଣ ବଣ ଫୌଜ ସଡ଼ଗଇ ପଡ଼କେ କ୍ୟା କହୁଁ ଭୈୟା ଭୁହ୍ମାରେ । ୩ ।

ନିକଲେ ସବ୍ ଭୂମ୍ ଗାଓ ଉଠାକେ ମାରନେକେ କଲକଭ
ଜୋର ନପାଏଁ ଉଠାଓନେ ତେଲ ପାହାଡ଼ ଛୋଡ଼ ମମତା । ୪ ।

ମୁଛ ଦାଢ଼ି ପର ହାଥ ରଖୋ ମତ୍ କୁଛ କାମ୍ ନହିଁ କୟା,
ବାତ ଶୁଣି ବ୍ରଜନାଥ କହେ ସରଦାର ଲୋକ ଜଲ୍‌ଗିୟା । ୫ ।

---

୮ । ଭବାମି କାଳ—ଭବାମି କାଳେ ପଣ୍ଡିତ, ଚଉଧୁରି—ମଞ୍ଜୁ ଚୌଧୁରି ।

୧ । ଭଗଡ଼—ପାହାଡ଼ିଆ ଗଡ଼; ସୁବେ—ସିହମାନେ; ଟୁକ୍—ସମୁହ; ଲଡ଼ନେ ନହିଁ—ହୋଇଲୁ ନାହିଁ; ଯାତେ ଯାତେ—ଯାଉଁ ଯାଉଁ; ଲିଆ—ନେଲା, ଦଖଲ କଲା; ତୋପକ ମାରେ—ତୋପ ମାର ବା ତୋପ ହାଣ ।

'ସରଦାରମାନେ ନିଷ୍ଠୁର ବଚନେ କହିଲେ ନାଗ ଉଗଳ
ବୋଇଲେ ଶୁନୋ ରାଜା ତୁମ କହୋ ଯୋ ହମାରେ ଗୁନାହ କୈସେହୁଇ
ବ୍ରହ୍ମଣା ରଜାରାମ ସବ୍ ଡୁବାୟା
କ୍ୟା କାମ ବଘା କସ୍ବାହ୍ମ ରାଜା ହାରେ ଫଉଜ୍ ଝୁକ୍ ଦାୟା । ୯ ।

ସବ ଦୁନିଆଁ ମେ ଖୁଦାଇ ତୁମ୍ହି ହୋ ତୁହ୍ମାରା ମନ ହୈଁ ଖୁଦାଇ
ବିନା ଆର୍ମେ ଆପ ଗୋସ୍ବାହୁଏଁ ଯୋ ନ ଫତେ ହୁଆ କାମ୍ ଓଇ
ହମ ହିଁ ଯୋ, ତୁହ୍ମାରେ ତାଇଁ ଶିର ଦେଗୁ
ବଢ଼ି ହୋଇସେ କାମ ଦେଖୋ ହମାରା ଖଣ୍ଡେ ପାତିଁ ଲେଉଁ ମୁରଗୁ ୧୦

ଏମନ୍ତ କହି ସରଦାରେ ମଜୁରା କରି ବାହାରିଲେ ବସାକୁ
ପହଡେ ରାତି ଥାଉଁ ଅଣ୍ଟା ବାନ୍ଧିବେ ମୂଳକରି ଏହି ଆଶାକୁ
ଭବାନୀ, କାନ୍ତୁ ମନ୍ତ୍ରୀବର ତହିଁରେ
ବିଗୁରେ କାର୍ଯ୍ୟହିଁ କରୁ ହେବ ନାହିଁ ମାହ ମାରିବେ ସରଦାରେ ୧୧

ଏତ ରାଜପୁତ ରେହ୍ଲିଲ ମୁଗଲ ବଘେଲ ଚୂହାଣ ପଠାଣ
ଗଡକୁ ପଶି ଝାସିପିବେ ସେ ଜଲୀଲଙ୍ଗିବେ ନାହିଁ କେହି ପୁଣ
ମାରିବେ, ରାଜା ଖବରଦାର ବଡ଼
କେତେ ଲୋକ ମଲେ ଏବେହିଁ ମରିବେ ମାଡ ଛୁଟିବ ନାହିଁ ଗଡ଼ ।୧୨।

---

୯ । ଗୁନାହ—ଅପରାଧ ବ୍ରହ୍ମଣା—ବ୍ରାହ୍ମଣ; ଡୁବାୟା—ଡୁବାଇ ଦେଲା; ବଘା—ଖରାପ; ଝୁକ୍‌ଦାୟା—ବଦନାମ୍ କରିଦେଲା ।
୧୦ । ଫତେ—ଶେଷ, ତୁମ୍ହାରେ ତାଇଁ—ତୁମ ନିକଟରେ ।
୧୨ । ଛୁଟିବ—ପତନ ହେବ, ହାତରୁ ଯିବ ।

ଏମନ୍ତ ବଚନ ଦେଲେ ମହାରାଣୀ ସରଦାରଙ୍କୁ ଏହା କହି
ସତ୍ୟର ଲଢ଼ିଲେ କାର୍ଯ୍ୟ ହେବ ସିନା ଲୋକ ମାରିବା କାହିଁ ପାଇଁ
ବୋଧନ, ଆଜ ସବୁର ଆଉ କର
ଧର୍ମ ଧାଡ଼ିଆଙ୍କୁ ରାଜାଙ୍କ ଗୁମ୍ଫକୁ ପେଷିଲେ କହି ଏଥିପର । ୧୩ ।

ଏତେ ଅବସର କାହିଁକ ତୁମର ହାକିମଠାରେ ଶପଥବ
ଏବେବେଁ ଅମ୍ଭ ଭ୍ରଷ୍ଟ ମଣି ବଦନ ଗଡ଼ ତୁମର ଗ୍ରୁଡ଼ିପିବ
କଲଣ, ଏବେ ତୁମ୍ଭେ ପେଞ୍ଜି ଲଢ଼ାଇ
ଆଜଯାଏ ଏହା କେହି କରିନାହିଁ ଉଗିଲ ଓଡ଼ିଶା ବାଡ଼ାଇ । ୧୪ ।

ମୁଧାଙ୍ଗ ଆପଣ ଚଡ଼ିଚନ୍ଦ୍ର ପୁଣି ସିବ କି ଗଡ଼ ଫିଟାଇ ନୋହି
ସାବାସ ତୁମର ପାଡ଼ିସାରେ ତରଉ୍ୟାର ବାନ୍ଧି କଲ ଲଢ଼ାଇ
ଆଜି ହିଁ, ଗଡ଼ ଅନ୍ତର ହୋଇଯିବ
ଏମନ୍ତେ କାଲି ଫଉଜ ଉଠାଇବେ ହାକିମ ମରଜି ଉଛବ । ୧୫ ।

ଶୁଣି ନରପତି ନକର ସମ୍ମତି ବୋଇଲେ ସେ ସିନା ଚତୁର
ବାସୁଦେବ ଯେମନ୍ତ ଦେଗ ଦାଆର୍ଯ୍ୟ ଯେ ସେ ପାଠ ପଢ଼ା ଅଛି ମୋର
ମାଳାଦ୍ରି, ଚନ୍ଦ୍ରମା କରେଛୋ ପାଠକ
ତମ କଲ୍ପ ନାଶ ଭୁଜନାଥ ଦାସ ଯେନତେ ଉସିକ ସବେକ । ୧୬ ।

—*—

---

୧୩ । ସବୁର— ଅପେକ୍ଷା, ଧର୍ମଧାଡ଼ିଆ – ଡଗର ।

୧୫ । ମୁଧାଙ୍ଗ—ମୁଦ୍ରୋଜୀ ଭୋଁସଲ, ନାଗପୁରର ରାଜା; ଚଟିଚନ୍ଦ୍ର—ରଘିଚନ୍ଦ୍ର ।

## ପଞ୍ଚମ ଛାନ୍ଦ

( ରାଗ—ଆଷାଢ ଶୁକ୍ଳ । )

ଏଥି ଉତ୍ତରୁ ଶୁଣହେ ସୁମନ୍ତ
ଗଡ଼ ଛାଡ଼ିବା ଶୁଣି ନରପତି
ବିବେକ ପାଞ୍ଚ ମନ୍ତ୍ରୀ ସରଦାର
ଦଳ ବେହେରା ଯେ ଉତ୍ତମ ନର
ସଭିଙ୍କି ଡକାଇ
ବୋଇଲେ କହ କହ ହେ ବିଚାରି । ୧ ।
ଜାହା ମନକୁ ଆସୁଛି କେମନ୍ତ
କହିଁ ବିଚାର କରିବା ନିଶ୍ଚିତ
ଲଢ଼ିବା କି ଅବା ଛାଡ଼ିବା ଗଡ଼
ଦୁଇ କଥାରୁ କେ ବିଚାର ବଡ଼
ଶୁଣି ଏ ବଚନ
କହନ୍ତି ତହିଁ କେ ଶୁଣ ରାଜନ । ୨ ।
ଗୋସାଇଁଙ୍କ ପୂର୍ବ ସୁକୃତ ବଳ
ଅଖଣ୍ଡ ହୋଇଥିବାରୁ ପ୍ରବଳ
ମନେ ନଥିବା କଥାମାନ ହୋଇ
ବଇରି ଶିରେ ଚଡ଼କ ପଡ଼ଇ
ଏବେ ଯାହା ହେଲା
ଜାହା ମନରେ ଏ ପରତେ ଥିଲା । ୩ ।

---

୧ । ବିବେକ – ବିବେକୀ; ଡକାଇ – ଡାକି ।

ଯଜ୍ଞଁ ଲଡ଼ାଇ ହେଲ ନୃପମଣି
ଯେନଲେ ଗ୍ଲନ୍ତି ହୋଇଯାଏ ପାଣି
ସିନ୍ଧୁକୁ ବାନ୍ଧ ରଖନ୍ତ ଅଟକ
କାହା ବଳେ ଏକମିଁ ହୋଏନା କ
ଯା ନାଗର ଘାତେ
ଡରେ ଥରହର ନୃପତ ଯେତେ । ୪ ।

ଅଠର ଛନ ଗଲ ଏବେ ବନ୍ଧ
ଅଠର ହେଲେ ଲଡ଼ି ଲଡି ସେବନ୍ଧ
ପଣ ନ ପିଠି ଗଲନି ସଯାର
ଗଣ୍ଡୁ ଧ ଛନ ହେବାକ ଅନ୍ତର
ଶୁଣି ନରସାଇଁ
ଅନ୍ତା ବୋଲି ପୁଣି ଆନକୁ ଗୁନ୍ଥିଁ । ୫ ।

ମେ ହାଥ ଯୋଡ଼ ବୋଲେ ନୃପମଣି
ଶାସ୍ତ୍ରମାନଙ୍କେ ଅଚ୍ଛୁ ଏହା ଶୁଣି
ଯେ ଯାହାକୁ ପ୍ରଣ୍ଡ ବଳବନ୍ତର
ତାସଙ୍ଗେ ଅପ୍ରୀତି ନୋହେ ବନ୍ଧୁର
ଯେବେ ହୋଏ ଦ୍ୱନ୍ଦ
ପ୍ରୀତି କଲେ ପୁଣି ହୋଏ ଆନନ୍ଦ । ୬ ।

ନଉବୋଲ ପୁଣି କାହାକୁ ଗୁନ୍ଥିଁ
ମେଣ୍ଟ ପୁଣି ହାଥ ଯୋଡ଼ ଜଣାଇ
ଏକ ଚଣ୍ଡ ସର୍ବଦା ନ ରହେ
ଆଲୁଅ ପୁଣି ଅନ୍ଧକାର ହୋଏ

---

୪ । ଅଠର—ଅସ୍ଥିର ।

କେତେବେଳେ ଯଶ
କେତେବେଳେ ବା ହୋଏ ଅପଯଶ । ୭ ।

ଅଠର ଦନେ ନାହିଁ ଅପଜସ୍ରେ
ସଂସାରେ ଦୁଆ କଲେନି ସଭିଏଁ
ଆଉ କି ତାହା କହିବୁ ଗୋସାଇଁ
ଯେମନ୍ତ ଦିବ୍ୟ ଚନ୍ଦ୍ରକୁ ଆସଇ
ଶୁଣି ବଚନକୁ
ଗର୍ଭ ହଲଇ ବୃଦ୍ଧାନ୍ତ ଆନକୁ । ୮ ।

ସେ ବୋଲେ ଯହିଁ ଯଶ ରହିଗଲା
ତହିଁକି କାରଣ ପ୍ରଭୁଙ୍କ ଚାଲି
ମାରିଲଇଁ ଏବେ ମାରିବା ପୁଣ
ଏଥକୁ ଛଳେ ଭସ୍ମ ନାହିଁ ଜାଣ
ଭଲ ଭଲ ଏବେ
କରନ୍ତୁ ସେ ଆଜ ଯାହା କରିବେ । ୯ ।

ଯିନିସ ଦାନା ଆମ୍ଭର ନଥାନ୍ତା
ବାରୁଦ ଗୁଳି ଅବା ସରିଯାନ୍ତା
ତେବେ ବା ମନ ହୁଅନ୍ତା ଉଦର
ଗୋସାଇଁ ନଜାଣ କହୁଁ ବହୁର
ଶୁଣି ଏହି ବାଣୀ
ବୋଇଲେ ଆଉ କେହି କହ ପୁଣି । ୧୦ ।

---

୮ । ଦୁଆ—ପ୍ରଶଂସା; ଗର୍ଭ—ତ୍ରୁଟି ।
୯ । ଚାଲି—ଭାଗ୍ୟ ।
୧୦ । ଉଦର—ନଇଁପଡ଼ିବା ।

ଶୁଣି ଜେ ବୋଲେ କୁରନିସ କରି
ପୃଥ୍ୱୀଥିଲେ ହୋଏ ଯାହା ବସ୍ତୁରି
ସେ ଖଜଗଲେ କଷ୍ଟ କରି ନୋହେ
ପରଜା ଥିଲେ ରାଜା ଠେକ ରହେ
ସେ ହେଲେନି ବହି
ଲକ୍ଷ ଲକ୍ଷ ଘୋଡ଼ା ଅଛନ୍ତି ପନ୍ନିଁ । ୧୧ ।

ଅଚ୍ଛା ବୋଲି କାହା ମୁଖ ଚକାନ୍ତେ
ସେ ବୋଲେ ଏ ଝଗୁର ଝଣେ ମୋତେ
ଚଡ଼ଗୁଡ଼ ଝନେ ଧେବା ଅନ୍ତର
ଏତେକେ ଉଠି ଯିବେ ଲସକର
ମୁଲକ ରହିବ
ଯେମନ୍ତ ଧବ୍ୟ ଶତ୍ରୁକୁ ଆସିବ । ୧୨ ।

ଶୁଣି କହନ୍ତି ସେଷ ନରସାଇଁ
ଏତେ କଥା କହିଁ କହ ଘୋଡ଼ାଇ
ସମସ୍ତେ କହୁଛ ପଳାଇ ଯିବା
କେହିତ କହିଲ ନାହିଁ ରହିବା
ମୁଁ ନ ଯିବ ଛାଡ଼ି
ଭଲ ଜେମନ୍ତେ ମୋତେ ଦେବେ ଛଡ଼ି । ୧୩ ।

ହତିଆର ବାନ୍ଧିଥିବା ଲୋକର
ମରିବାକୁ ଯେବେ ହୋଇବ ଡର
ହତିଆର ଛାଡ଼ି ଖେତ କମାଉ

---

୧୧ । କୁର୍ନିସ୍—ନମସ୍କାର ।
୧୨ । ଚକାନ୍ତେ— ଚାହାଁନ୍ତେ ।

ତେବେ ତାହାକୁ କହିବା କି ଆଜି
ନିର୍ଲଜ୍ଜ କରିବା
ଷଣ୍ଢିଙ୍କ ଶୋଭା ରଣେ ପ୍ରାଣ ଦେବା । ୧୪ ।
ଭୀମ ଅର୍ଜୁନ ଦ୍ରୋଣ କର୍ଣ୍ଣବୀର
କାହିଁ ଅଛନ୍ତି ଦେଖ ଶରୀର
ଯଶ ମାତ୍ରକ ଯାଇଅଛି ରହି
ନା-ମରଦକୁ କେହୁଣ୍ଡେ ବସାଇ
ଏହା ନଦେଖିଲ
ଗଡ଼ ଗୁଡ଼ ଗୁଡ଼ ସମସ୍ତେ ବୋଲ । ୧୫ ।
କାହାର ପୃଥ୍ୱୀ କେ ସଙ୍ଗରେ ନେବ
ଯଶ ଅପଯଶ ଦୁଇ ରହିବ
କେତେ ରାଜାଗଲେ ପୃଥ୍ୱୀ ନଯାଇ
ଦୁଇ କଥାରେ ଯେ ନାମ ରହଇ
ଦାତା ଶୂରପଣ
ଏ ବିନେ ଆଉ ନାମ ନୋହେ ଜାଣ । ୧୬ ।
ଦେଖ ହେଉଅଛି କେତେ ମଉଜ
ଲଡି ରଖିଛୁଇ ଏତେ ଫଉଜ
କମର ବାନ୍ଧିଛୁଇଁ ଦିନରାତ
ଏଥୁଁ କି ବଡ଼ ବାସବ ସମ୍ପତ୍ତି
ଛୁଞ୍ଚ ଉଠେ ଫୁଲ
କେମନ୍ତେ ବୋଲ ଗଡଗୁଡ଼ ବୋଲ । ୧୭ ।

---

୧୪ । ହତିଆର—ଅସ୍ତ୍ର; କମାଉ—କାମକରୁ, ଭୃଷକରୁ ।
୧୫ । ନା-ମରଦ—ପୁରୁଷତ୍ୱହୀନ ବ୍ୟକ୍ତି ।
୧୬ । ପୃଥ୍ୱୀ—ରାଜ୍ୟ; ବିନେ—ବିନା ।

ପଞ୍ଜର ଭିତରେ ଯୋଡ଼ା ପକାଇ
ମାରେ ବରଛା ଯେ ନିର୍ଭୟ ହୋଇ
ସଙ୍ଗୀ ପଡ଼ିଏ ପଣି ଝାସିଯିବ
ଫେରି ଅଇଲେ ତ ସକଳ ଲାଭ
ନୋହିଲେ ସେ ମଲେ
ବାସବ ସଙ୍ଗତେ ବସଇ ଭଲେ । ୧୮ ।

ହାଥ ଉଠାଇ ଯେ ମରିବ ବୀର
ତାହାକୁ ମାଝ ସେହି ପଟାନ୍ତର
ଉଣେ ଯା ଅଙ୍ଗ ହୋଏ ଚେନା ଚେନା
ତାହାରି ଜୀବନ ସଫଳ ସିନା
ଯେ ନିସତ ହୋଏ
ପୁରୁଷ ହୋଇଲେ ଅବଳା ପ୍ରାୟେ । ୧୯ ।

କୋଳ ଅଙ୍ଗରେ କର୍ପୂର ଚନ୍ଦନ
ମଣ୍ଡି ହୋଇଥିବ ହେମ ରତନ
ଘରେ ଥିବ ଶଚୀପତ୍ତି ସମ୍ପତ୍ତି
ରକତ ଦେଖି ଦୁଲୁକବ ଛାତି
ସେ ମନୁଷ୍ୟ ହୀନ
ଯୋଗ ନୋହେ ସେ ତା ଯୋଗ ସମାନ । ୨୦ ।

କାର୍ତ୍ତିକ କଳ୍ପା ବଳେ ଏଥି ଥିବା
ଗୁଲ ଢାଲ-ଖଣ୍ଡା ହୋଇ ମିଶିବା!
ହରିବୋଲ ଝାସୁଁ ଯେ ହେବ ହୋଉ

---

୧୯ । ହାଥଉଠାଇ—ଅସ୍ତ୍ର ଚାଳନା କରୁ କରୁ; ଚେନା ଚେନା —ଟିକି ଟିକି; ନିସତ—ହାଳିଆ ।

ଏତେ ବିଗୁରରୁ କି ଫଳ ଆଉ
ଏହି କଥା ମୂଳ
କେ ସହିବ ବଇରାଗୀଙ୍କ ଜଞ୍ଜାଳ । ୨୧ ।

ଲେଉଡ଼ରୁ ଗୁଡ଼ ଜହ୍ନିକି ଗଲେ
ଯେମନ୍ତେ ବିଘଟଣ ହୋଏ ଭଲେ
କଲ ସାରେଣୀ ଗୁଣ ଗଲେ ଗୁଡ଼ି
ହାଥକୁ ଆସଇ କି ଯେବେ ଲେଉଡ଼ି ?
ବଇରାଗୀ କପଟ
ଜାଣି ନାହିଁ ତାଙ୍କ ହୃଦର ନଟ । ୨୨ ।

ତାଙ୍କ ଭାଷାରେ ଗଡ଼ ଗୁଡ଼ିପିବା
ଦେଉଁରଙ୍କ ପର ଅରଣ୍ୟେ ବୁଲିବା
ତହିଁ ଉପରୁ ଗଡ଼ କରି ଫତେ
ବୋଲିବେ ଟଙ୍କା ବୃଦ୍ଧି ହଅ ମୋତେ
ତେତେବେଳେ ପାଇଁ
ନ ବୃଦ୍ଧି ଏହା ଜାଣିଛ କିପାଇଁ । ୨୩ ।

---

୨୧ । କଲ୍ଲାକଲେ—କଲ୍ଲାପେଗୁଁ; ଢ଼ାଲ ଖଣ୍ଡାହୋଇ—ଢାଲ ଖଣ୍ଡାଧରି, ଝାସୁଁ—ଝାସ ଦେବାରୁ ।

୨୨ । ଲେଉଡ଼ରୁ—ହାତ ପାପୁଲିରୁ; ବିଘଟଣ—ଅସୁବିଧା; ସାରେଣୀ—ଗୋଲକାର କାଠରେ ତିଆରି ଖେଳନା, ଗୁଣ—ଦଉଡ଼ି ବା ସୂତା ।

୨୩ । ଫତେ—ଶେଷ ।

ପଥ ଅନ୍ଧାର ବାଲି ହୋଇଥିବ
ହାଥ ଗୁମ୍ଫାରେ ସେ ପୁଣି ମିଶିବ
ତେତେବେଳେ ମନେ ପଡ଼ିବ ସିନା
ଯେ ହେବ ଏତେବେଳେ ହୋଇ କନା
ନ ଗୁଡ଼ିବ କାନ୍ଥା
କଥା ତ ରହିଯିବ ଭଲ ଭଲ । ୨୪ ।

ଏମନ୍ତ କହି କୋପେ ଗରୁଡର
ମୂର୍ଚ୍ଛା କରି ଦେଲେ ଖବର୍ଦ୍ଦାର
କାହାରି କହିବା ଯୋଗ୍ୟତା ନୋହେ
ଭାଏ ମନ୍ତ୍ରିନେ ରହିଲେ ସଭିଏଁ
କେ କହିଲେ ହୋଉ
ସବୁ ଦିନେ ତ ନ ଗାଇବା ଆଜ । ୨୫ ।

ନଗର ଭିତରେ ଏ ଖବର ହେଲା
ରାଏ ସାହେବଙ୍କୁ କେ ଜଣାଇଲା
ନରେନ୍ଦ୍ର ସାହେବ ଶୁଣି ଚକିତ
ଘରଁ କହିବାକୁ କାହା ଶକତ
ସକଳେ ବିଷାଦ
ବିଭ୍ରାନ୍ତି ହେଲା କି ପରମାଦ । ୨୬ ।

ମନ୍ତ୍ରୀମାନଙ୍କ ହେଲେ ଅବାରଣ
କାହାକଲେ ସେ ଧରି ହୋଏ ପୁଣ
ଆହାରେ ଆଶ୍ରମି ଶୋଚ କହିରେ

---

୨୬ । ରାଏ ସାହେବ—ଯୁବରାଜ; ନରେନ୍ଦ୍ର ସାହେବ—ଯୁବରାଜଙ୍କ ସାନଭାଇ ।

ଯେମନ୍ତେ ଧରନ୍ତି ନାନା ବର୍ଣ୍ଣରେ
ସେହି ରୂପେ ନାନା
ମନ୍ତ୍ରଣା ଉପାଏ କଲେ ଘଟଣା । ୨୭ ।
କଥା ଭଙ୍ଗିରେ ଦେଖାଇ ଜଣାନ୍ତି
ନବରୁ ହେଲ ପରା ଏ ସନ୍ତତି
ଧ ଧନ ପିବା ଗଣ୍ଡୁଁ ଦୂର ହୋଇ
ବର୍ବର ଏଠାରେ ଏହି ଗୋସାଇଁ
ସେ ନ ପିବେ ଯେବେ
ମୂଲକ ମାଟି ଭ ଖୋଳି ନ ନେବେ । ୨୮ ।
ଠାବେ ଠାବେ ସିଣ୍ଡି କରିବା ହାଲ
ଦାନା ନ ପାଇ ହେବେ କଲ ବଲ
ଘାଟ ବାଟ ଖଣ୍ଡି ବନ୍ଧିବା ଯହୁଁ
ରସ୍ତ କେମନ୍ତେ ଚଳିବଟି ଆଜି
ଦ୍ରବ୍ୟ ଛଡ଼ଉ ଘେନ
ଛୁଡ଼ପିବା ମାଷ ଗଣ୍ଡ ଦୁ' ଦିନ । ୨୯ ।
ସାତ କଥାରେ ଭୂଲେ ପରା ସଖି
ଟଭଭେବେଳେ ରାଜା କଲେ ସନ୍ତୁଷ୍ଟ
କାହାକୁ କେତେ ଲଙ୍ଘିବେଟି ଦ୍ରୁଣ
ଛୁଡ଼ିଲେ ଗଣ୍ଡ ଏହି ରୂପେ ଜାଣ
କୃଷ୍ଣପାଦ ପଦ୍ମ
ଚିନ୍ତି ବ୍ରଜନାଥ ନାଶେ ବଷାଦ । ୩୦ ।

—୦—

୨୭ । ଝୋପ—ଗାଛ ।
୨୯ । ହାଲ—ଗୋଳମାଳ; ଖଣ୍ଡି—ନଦୀଘାଟ ।

# ଷଷ୍ଠ ଛାନ୍ଦ

## ରାଗ — ଘଣ୍ଟାରବ

ଏବେ ଶୁଣ ଧୀର ମତି ଗଡ଼ ଗୁଣ୍ଡନ୍ତେ ନୃପତି
ଫତେ ବରୁଣ ଫଜଲ ଲୁଠିଗଲେ ଏ ଅନ୍ତେ ଶୁଣ ଯେ ସାନ୍ତ । ୧ ।
ଯଉଁ ଯଉଁ ଖଣ୍ଡାଇତେ ମିଳି ବରଗୀ ସଙ୍ଗତେ
ଶତ୍ରୁ ହୋଇ ଢେଙ୍କାନାଳେ ଲଢ଼ୁଥିଲେ ବେଗରନ୍ତି ସେହୁ ଶତ୍ରେ । ୨ ।
ଧନ୍ୟ ଢେଙ୍କାନାଳ ପତି ଧନ୍ୟ ତାଙ୍କ ଧୈର୍ଯ୍ୟ ମତି
ରାଜା ମହାନ୍ ବାହାଦୁର ପଦ ଯା ଜାଣିଦେଲେ ଗଜପତି । ୩ ।
ଧନ୍ୟ ଧନ୍ୟ ତାଙ୍କ ସୈନ୍ୟ ଚତୁର ତାଙ୍କର ଧନ୍ୟ
ସାଗର ଭିତରେ ପଶି ପାରହେଲେ ଧନ୍ୟ ଧନ୍ୟ ତାଙ୍କ ପୁଣ୍ୟ । ୪ ।
ଆମ୍ଭମାନଙ୍କ ବନ୍ଧୁର ହେଲା ବଡ଼ ଅସୁନ୍ଦର
ପ୍ରୀତିରେ ଅପ୍ରୀତି କେବଳ କଲୁଁ କାର୍ଯ୍ୟ ନାହିଁ କଣ୍ଠାକର । ୫ ।
ତାଙ୍କ ସଙ୍ଗତେ ଅଭାବ କରିବାରୁ ନାହିଁ ଲଭ
ହେଲା ଏହା ମତି କେହୁ କେହୁ ପ୍ରୀତି କରିବାରେ କଲେ ଲୋଭ । ୬ ।
କେ ହାରସିଠ ପେଷିଲେ କେହୁ ଆପଣେ ଆସିଲେ
କେ ନାନା କୌତୁକ ଶଜ ଦେଇ ଲୋକପେଶି ମାନସ ତୋଷିଲେ ।୭।
କେ ଦେଇ ଯୁଝା ଚଢ଼ାଇ ବମନ ହେଲେ ଛଡ଼ାଇ
ଏହିରୂପେ ନାନା ପ୍ରକାରେ ଭାବନା କଲେ ନରଖି ବଢ଼ାଇ । ୮ ।

---

୧ । ଫତେ ବରୁଣ—କାର୍ଯ୍ୟପୂର୍ଣ୍ଣ ହୋଇଗଲା ଭାବ ।
୭ । ହାରସିଠ—ହାସ୍ୟ ।
୮ । ଯୁଝା ଚଢ଼ାଇ—ଗୋବର ଚଢ଼େଇ ।

ସମସ୍ତେ କଲେ ପୀରତି କେନ୍ଦୁଝର ନରପତି
କେବଳ ଅପ୍ରୀତି କରି ହମ୍ବଣ୍ଡି ଆରମ୍ଭିଲେ କୋପେ ଅତି । ୯ ।
ଈକ୍ଷଣ ଥାଉ ନହରେ କହନ୍ତି ଯା ସେଠି ଆସେ
ଚେମଣାବାବୁଙ୍କ ଦୁଃଖ ଦେଖି ଦେଖି ବଳଶ୍ରୀ ଯାହା ହେଲେ ସେ ୧୦
ସଇନ କଲେ ତାହାର ସଙ୍ଗେ ହେଲ ମଲହାର
ସୀମାପାଖ ଲଗି ଛପି ଗଡ଼ି ଜଗି ଗ୍ରାମମାନ କଲେ ଜୁର । ୧୧ ।
ଶୁଣି ଏହା ମହାରାଟସ୍ଥ ବୋଇଲେ ନୃପ ଅଥସ୍ଥ
ତାଙ୍କର ଆମ୍ଭର ପ୍ରୀତିକ ମାତର ସାକ୍ଷୀ ଅଛଇ ଗୋଷ୍ଠାଏ । ୧୨ ।
ଆଗନ୍ତୁ ଜଡ଼ଲ ନୃପ ଦୁଇ ଗୃହପଠ ସହ
ଘାଣ୍ଟେକେ ତ ତାଙ୍କୁ ମୁଲକୁ ତଡ଼ିବା ଗୁଡ଼ିପିବ ସବୁ କୋହ । ୧୩ ।
ଯିବାପାଇଁ କେନ୍ଦୁଝର କାଣ୍ଡଗୁଳ ନାକ କରି
ଫୋପଡ଼ ହଜାର ପାଞ୍ଚଶତେ ଆଉ ଜାକିପିବ କେନ୍ଦୁଝର । ୧୪ ।
ପୂର୍ବରୁ ସେ ଏହା କହୁ ନେଇଥିଲେ ପଠିଆଇ
ଦୁଇଘୋଡ଼ା ଯେବେ ଦେବ ହେବ ତେବେ ତୁମ୍ଭ ଆମ୍ଭ ସଲ୍ହାପାଇଁ ୧୫
ଏହା ଓକିଲ କହିଲ ତର୍ଜିକ ଏଣୁ ପଡ଼ିଲ
କାର୍ଯ୍ୟକ ଏହା ନ କହିବେ ଯେହେତୁ ହଇବେ ଅଟମ୍ଭ ପିଲା । ୧୬ ।
ଓକିଲ ଏହା ଶୁଣିଲ ତାଙ୍କ ରାଜାଙ୍କୁ କହିଲ
ଫୋପଡ଼ କଥାର୍ଯ୍ୟ କ କ ରୂପେ ଯାଇଁ ପୃଥିବୀ ଗୋଚର ହେଲ ।୧୭।
ହଇବେ ନୃପତି ସେତ ଶୁଣି ସେ କଠ୍ ଭଣିତ
ବୋଇଲେ ମୋ ରାଜ୍ୟ ବୁଝୁ ପଛେ ସାଜ ସକଳ ସୈନ୍ୟ ଭୂଶିତ ।୧୮।
ବନ୍ଧାଠଙ୍କା ଦଶହାର ମାଇନା କରି ବୃକଳ
ତେଲେଙ୍ଗା ଗାରଦ ରଖିଲେ ସମ୍ବାଦ ବାଛୁ ଦ୍ରବ୍ୟ ଅସ୍ତ୍ରଆଉ ।୧୯।

---

୧୩ । ଜଡ଼ଲ—ତର ତର ହେବା; ଘାଣ୍ଟେକେ—ଥରକେ ।
୧୪ । ଆଉ—ଦମ୍ଭ ।
୧୯ । ମାଇନା—ପଶଂସା ।

କାଣ୍ଡ ଗୁଳାଡାରୁ ଗୁଳି ଗୁଡ଼ଳ ବରକ୍ଷ୍ମା କଦଳୀ
ଚମାଣ୍ଟ ଲୁଣ ଆଦ ଅଂଗ ସେ ବରଷ୍ମା-ପାଳଠାକୁ ଦେଲେ ଗ୍ଳନ ।୨୦।
ଲୋକ ଶଅ ପାଞ୍ଚସାତ ଅଇଲେ ଚର୍କ୍ତି ସଙ୍ଗତ
ଘୋଡ଼ା ମୁରୁଗ୍ଣ ଦେବାପାଇଁ ବେଠିଆ ଆସି ଅଛନ୍ତି ବହୁତ । ୨୧ ।
ଅଣ୍ଣଆର ଦଶବାର ମିଳଲେ ଆସି ସେଠାର
ଲୁଟିବେ ଲଡ଼ିବେ ମୁଲକ ମୋଡ଼ିବେ କରିଛନ୍ତି ଏ ବିଗ୍ଚର । ୨୨ ।
ଏହା ଗଜନ ଶୁଣିଲେ ବେବର୍ଗ୍‌କୁ ବଦାକଲେ
କେଲ୍ଲୁ ଦୁଆର ଜମାଦାର ପଉଜ ପିବା ପାଇଁ ଆଜ୍ଞା ଦେଲେ ।୨୩।
ପାଞ୍ଚ ପାଞ୍ଚ ତାଙ୍କ କୁଟ ଆଗହୁଁ ହେଲେ ଏ ଭେଟ
ଭେଟଣା ହେଲାପରେ କେତେ ମଲେ ସେ କେତେ ଧନ ହେଲା ଲୁଟ ।୨୪।
ଜଣ ଜଣକେ ବଗ୍ଭର ମାର କେ ଆଣିଲେ ଧର
ହେନ ଚମ୍ପାଇ ଘୋଡ଼ାକୁ ସିପାହୀ ବେବର୍ତ୍ତା ଆଣିଲେ ମାର ।୨୫।
ଘୋଡ଼ା ହଥିଆର ମୁଣ୍ଡ ଅଣିଲେ ନଳୀ ପ୍ରଚଣ୍ଡ
କେତେ ଖଣ୍ଡ ଖଣ୍ଡ ହେଲ ବାଜ କାଣ୍ଡ ଗୁଳ ଗୋଲଲ କା ପିଣ୍ଡ ।୨୬।
ଲୁଟି ହୋଇଲା ଅନେକ ତାଙ୍କ ସରଞ୍ଜାମ ଯାକ
ନବା ହର୍ତ୍ତିଟି ଗୋଟିଏ ଯାଇଥିବେ ବାର୍ତ୍ତା କହିବାକୁ ଲୋକ । ୨୭ ।
ଏତେକେହେଁ ନ ଚେତଲେ ଆପଣେ ଗ୍ଳା ଅଇଲେ
ପଳାଶୁଣୀଗଡ଼ ଲଢ଼ାଇରେ କେତେ ତେଲେଙ୍ଗା ଗିଗ୍ଭଇ ଦେଲେ ।୨୮।

---

୨୦ । ବର୍ଷ୍ମାଗ୍ରାଳ—ଡେଙ୍କାନାଳ ଓ କେନ୍ଦୁଝର ମଧ୍ୟବର୍ତ୍ତୀ ଏକ ସ୍ଥାନ ।

୨୫ । ଚମ୍ପାଇ ଘୋଡ଼ା—କେନ୍ଦୁଝରର ଗୋଟିଏ ଘୋଡ଼ା ।

୨୮ । ପଳାଶୁଣୀ ଗଡ଼ —କେନ୍ଦୁଝରର ସୀମା ନିକଟବର୍ତ୍ତୀ ଡେଙ୍କାନାଳର ଗୋଟିଏ ଦୁର୍ଗ ।

ମାଇଲେ ଆସନ୍ତେ ଗୁଣ୍ଡ ଗଣ୍ଡମାନ ହେଲେ ମୋଡ଼
ଯର୍ଦ୍ଦି ଯୋଦ୍ଧଜନ ଆସିଛନ୍ତି ସେ ଯେ ଭାଗିଯାନ୍ତି ଜଠିଗଡ଼ । ୨୯ ।
ପୁଣିଗଲ କେତେ ଧନ ସାଜ ତାଙ୍କ ସଙ୍ଗସୈନ୍ୟ
ଜମ୍ପାଇଠାରେ ଜଲେ ଯଦ୍ଧ ଲଢ଼ାଇ ତର୍ଦ୍ଧି ହେଲେ ତେଜ ହୀନ ୩୦
ଲେକ ଦ ଘର ହଜାର ପଞ୍ଚାଶ ଷାଠି ସୁଆର
ନଗଦ ରୁକରମାନଙ୍କି ଅପାର ଆଣିଥିଲେ ସଙ୍ଗତର । ୩୧ ।
ଚଳାଇ ଆସନ୍ତେ ତେଣୁ ଲୋକ ପହଞ୍ଚିଲେ ଏଣୁ
ହାଥମାନ ଘୋଳ ହେଲ ଏହାଙ୍କର ତାଙ୍କୁ ମିଶି ହାଣ୍ ହାଣୁ । ୩୨ ।
ବେବର୍ତ୍ତା ସେହନ ମିଶି ଭଡ଼େ ଘୋଡ଼ା ହେଲେ ଝାସି
ମାର ତରୁଆର ଏକ ଅଶ ଆଉ ଯମପୁର ଦେଲେ ପେଶି । ୩୩ ।
ମୁଣ୍ଡତାର କାଟି ଆଣି ଘୋଡ଼ାଇ ଆଣିଲେ ପୁଣି
ଏହ୍ନରୂପେ ଯେ ଯେମନ୍ତ ସେହ୍ନରୂପେ ଦୁଇଗୁଣ ଗଲେ ହାଣି । ୩୩ ।
ପଳାଇଲେ ଗୁଣ୍ଡରଣ ନ ଅଣ୍ଟିଲ ଗିଲ ବଣ
କେତେଲୋକ ଅବା ଗୁଡ଼ ହଥିଆର ପଳାଇଲେ ଘେନି ପ୍ରାଣ । ୩୪ ।
କେବଳ ତାହାଙ୍କୁ ଏବେ ଲୋକ ବୋଇଲେ ଜଗତେ
କେନ୍ଦୁଝର ରଜା ଧର୍ମ ଲଙ୍ଘିଲେ ହୋ ଯଶ ମିଳବ କେମନ୍ତେ । ୩୬ ।
କେ ବୋଲେ ସେ ଅ-ସୁବୁଦ୍ଧି କଲେ ଝାଡ଼ୁଆଙ୍କ ବୁଦ୍ଧି
ପ୍ରୀତିଠାରେ ଯେ ଅ-ପ୍ରୀତି କଲେ ସେହ୍ନ ସହ୍ନବଟି ଏହା ବିଧି । ୩୭ ।
ପରଜା ହେଲେ ଉଚ୍ଛନ୍ନ ରାଜ୍ୟ ହେଲ ଛିନ୍ନ ଭିନ୍ନ
ବୋଲେ ବ୍ରଜନାଥ ବଡ଼ଜେନା ଏଥୁ କି କାର୍ଯ୍ୟ ଅଛୁଟି ଘେନ । ୩୮ ।

—o—

---

୩୪ । ଘୋଡ଼ାଇ —ଘୋଡ଼ାକୁ ।

# ସପ୍ତମ ଛାନ୍ଦ

( ରାଗ—କେଦାର କାମୋଦ । )

ଶୁଣ ଏବେ କହିବା ଯଉଁ ଚରିତ
ଗୁଣଗ୍ରାହକ ବିଚକ୍ଷଣ ପଣ୍ଡିତ ଯେ ।
ସମର ତରଙ୍ଗ ଏ ଗୀତର ନାମ
ଯେ ମରଦ ଲୋକ ସେ ଏହା ଧେନମ ଯେ । ୧ ।
ରାଜା ମହାନ୍ଦ୍ର ବାହାଦୁର ରାଜନ
ନାମ ନବୀନ ପୃଥ୍ୱୀ ଅଛି କ ଯେନ ହେ ।
ସମରେ ଗଣି ବୀର ଅର୍ଜ୍ଜୁନ ସଙ୍ଗେ
ଶ୍ରମ ସମାନେ ବଳବନ୍ତ ସେ ଅଙ୍ଗେ ଯେ । ୨ ।
ମନ୍ଦର ଗିରି ପରି ଅତି ନିଶ୍ଚଳ
ଚନ୍ଦ୍ରର କଳା ପ୍ରାଏ ଶାନ୍ତ ଶୀତଳ ଯେ ।
ଶୋଭାରେ ଜାତ କିବା ନବୀନ କାମ
ପ୍ରଭାରେ ଚଣ୍ଡକର ତେଜ ଯା ସମ ଯେ । ୩ ।
ଦାନରେ ବଳିରାଜା ଉପମା ଦେଇ
ମାନରେ ପର୍ଶୁରାମ ପରାଏ କହି ଯେ ।
ସ୍ନେହରେ ଲବଣୀରୁ ଅତି କୋମଳ
କ୍ରୋଧରେ କିବା ଜଳୁଥାଇ ଅନଳ ଯେ । ୪ ।

---

୧ । ମରଦ—ପୁରୁଷ ।
୩ । ଚଣ୍ଡକର—ସୂର୍ଯ୍ୟ ।

ଗୃକର କଳ୍ପଲତା ଫଗଏ ସୃଷ୍ଟି
ଶାକର ସ୍ରାଏ ସ୍ୱାଦୁ ଯ ହାଙ୍କ ବାଣୀ ଯେ ।
ଚକର ମକରଆ ଲେକର ଜାଲ
ଖାଙ୍କର କରନ୍ତି ଯେ ହୋଏ ପ୍ରବଳ ଯେ । ୫ ।

ସନ୍ଥବା ଗୁଣରେ ଯେ ମହ୍ମ ସଦୃଶ
ଗୃହ୍ନିବା ମାତ୍ରେ କେବା ନୋହିବ ବଶ ଯେ ।
କହିବା କଥା ଯାର ମନ ମାଦକ
ବନ୍ଥବା ମନ ଦୁଃଖକୁ ସେ ବିବେକ ଯେ । ୬ ।

ଇଙ୍ଗିତ କରନ୍ତି ଯା ନୟନେ ସୁର
ସଙ୍ଗୀତ ଗୀତ ରଙ୍ଗେ ଅତି ଚତୁର
ଭଙ୍ଗୀର ସେନ୍ଥଠାରେ ଅଛି କେବଳ
ଜଙ୍ଘୀତ ଗ୍ରୀଙ୍ଗିଦ୍ୟନ୍ତି ବଇସି କୂଳ ଯେ । ୭ ।

ଫଷ କଲେ ମୂଲକପାଙ୍କ ହିଁ ଦେବେ ।
ଶକ୍ୟ କେହ୍ନ କତ୍ତାଏ ନେବ ଅଗ୍ରବେ ଯେ
ଅକ୍ଷ ତ୍ରା ଲକ୍ଷ୍ମୀ କୃପାକର ଯାଠାରେ
ଲକ୍ଷ ଲକ୍ଷ ସୁଖ ସେ ପାଇ ବଦନରେ ଯେ । ୮ ।

କୋଣରେ ପରିପୂର୍ଣ୍ଣ ହୋଇ ସେ ନେହ
ପାପରେ ପଡ଼ନ୍ତି ବୁଡ଼ିଯାଇ ତା ଗୋହ ଯେ ।

---

୫ । କଳ୍ପଲତା—ମନୋବାଞ୍ଛା ପୂରଣକାରୀ ସ୍ୱର୍ଗୀୟ ଲତା ।
ଶାକର—ମଧୁର; ଚକରମକରଆ—ଗୋଲମାଳଆ;
ଖାଙ୍କର—ହୀନବୀର୍ଯ୍ୟ ।

୮ । ଶକ୍ୟ—ସମର୍ଥ; ଅକ୍ଷ—ଆଖି ।

ଯାପରେ ଅବଶ୍ୟ ହିଁ ଦୟା ବହନ୍ତି
ଭୂପରେ ନାହିଁ ଏ ସମାନ ଭୂପତି । ୯ ।
ଏହି ପ୍ରଭୁଙ୍କ ଆଠ ପୁରୁଷ ଲୋକ
ମୁହିଁ ଅଟଇ ଏହା ଜାଣନ୍ତି ଲୋକ ଯେ
କାହିଁ ଏବନା ଆଜ ଗତ ନଥାଏ
ମହୀମଣ୍ଡଳେ ଜଳ ବୃତକ ପ୍ରାଏ ଯେ । ୧୦ ।
ଯେଣୁ ଥିବାରୁ ପ୍ରଭୁମାନେ ହରଷେ
ମୁହିଁ ବ କାର୍ଯ୍ୟ କରୁଥାଏ ଉଲ୍ଲାସେ ଯେ
କାହିଁ ଏବନା ଆଜ୍ଞ ଗତ ନଥାଏ
ମହୀମଣ୍ଡଳେ ଜଳ ବୃତକ ପ୍ରାଏ ଯେ । ୧୧ ।
କାଲୁଙ୍କେଶ୍ବର ପଟ୍ଟନାୟକଙ୍କର
ଭାଗ୍ୟରେ ହେଲୁଁ ଆମ୍ଭେ ଗୃଶକୁମର ଯେ
ବୃଦ୍ଧଙ୍କ ପିତାଙ୍କ ସୁକୃତ ବଳରେ
କବିତା ପ୍ରସଙ୍ଗ ନାନା ପ୍ରକାରେ ଯେ । ୧୨ ।
ଅଗ୍ରଜ ଗୋପୀନାଥ ପଟ୍ଟନାୟକ
ଗୁଣବନ୍ତରେ ତାଙ୍କୁ ଜାଣନ୍ତି ଲୋକ ଯେ ।
ତାଙ୍କ ସମସ୍ତ ଗଲା ସଦାଚରଣେ
ଅଟନ୍ତି ପଶିଲେ ସଦାନନ୍ଦ ଚରଣେ ଯେ । ୧୩ ।
ତାଙ୍କ ଅନୁଜ ଜଗନ୍ନାଥ ଯେ ନାମ୍
ଗୁଣବନ୍ତେ ସେ ରାଜ କାର୍ଯ୍ୟକୁ କ୍ଷମ ଯେ
କବି ଭୂଷଣ ପଟ୍ଟନାୟକ ପଦ
ଏଥୁଁ କବିତା ଶକ୍ତି ଜାଣ କୋବିଦ ଯେ । ୧୪ ।

---

୯ । ଯାପରେ—ଯାହା ଉପରେ ।
୧୩ । ଗୁଣବନ୍ତରେ—ଗୁଣବନ୍ତ ପଣରେ ।

ଲୋକନାଥ ନାମରେ କନିଷ୍ଠ ଭ୍ରାତ
କବଲ୍ଭ ଭକ୍ତିମାର୍ଗେ ମହାପ୍ରଶସ୍ତ ଯେ ।
ପ୍ରଭୁଙ୍କୁ ସେବା କାର୍ଯ୍ୟେ ତାଙ୍କ ନିପୁଣ
ଗଜପତିଙ୍କ ପଦ ଦେଲେ ନରନାଥ ଯେ । ୧୫ ।

ଗୁଣବନ୍ତେ ତ ମୂର୍ଖ ଜଣା ନ ଯାଇଁ
ସତେ ହେଁ ତେଜେ ଶକ୍ତି ମୋହର କାହିଁ ଯେ ।
ତଥାପି ଗୁଣିଗଣ ଅନୁସରଣେ
କହୁଛି କରୁ ଥାଇ ପଦେ ଚରଣେ ଯେ । ୧୬ ।

କହିଁ ଦୋଷ ସଦୋଷ କେବା ନିର୍ଦ୍ଦୋଷ
କେ ରସପୂର କେବା ହୋଏ ନୀରସ ଯେ ।
କେ ଗୁରୁସ୍ଥାନେ ଲଘୁ କେ ଲଘୁଗୁରୁ
କେ ବର୍ଣ୍ଣେ ହୀନ କେବା ସୁବର୍ଣ୍ଣ ସ୍ଥିର ଯେ । ୧୭ ।

ଆରକୂଟ ରଜତ କୁନ୍ଦନ ସୁନା
ଭେଣ୍ଡି ଉତ୍ତମ ସବୁ ପଡ଼ଇ ଚିହ୍ନା
ତହିଁ ତଜଲ କଷ ହୋଇଲେ ପୁଣ
ନିର୍ଦ୍ଦୋଷେ ଜଗତେ ସେ ହୋଏ ଭୂଷଣ ଯେ । ୧୮ ।

ରାଜା ମହୀନ୍ଦ୍ର ବାହାଦୁରଙ୍କ ସଭା
ତୁଳା କଷଟି ପ୍ରାପ୍ତେ ଅଟଇ ଶୋଭା ହେ
ଏ ସଭାରେ ସନ୍ତତ ଥିବାରୁ ମୁହିଁ
ଗୀତ କହୁଛି ବୋଲି କହ ବୋଲାଇ ଯେ । ୧୯ ।

---

୧୮ । ଆରକୂଟ—ପିତଳ; କୁନ୍ଦନ—ଖାଣ୍ଟି ସୁନା; ଭେଣ୍ଡି—ନକଲି;
କଷ—ସୁନାର କଷଟି ।
୧୯ । ତୁଳାକଷଟି—କଷଟି ପଥର ।

ସଂସ୍କୃତ ପରାକୃତ ଖୋରଠା ବୋଲି
ନାନା ଭାଷାରେ ଗୀତ କବିତ୍ୱ କଲ ସେ
ବିବିଧ ଚଉପଦୀ ଚଉତିଶା ହିଁ
ବୋଲି ଛାନ୍ଦ ପ୍ରବନ୍ଧ ବୋଲିଛ ମୂର୍ତ୍ତିଁ ସେ । ୨୦ ।

ଶକାର ଛାନ୍ଦମାଳା-ବୃତ୍ତ ଚୂର୍ଣ୍ଣିକ
କଥା କଥନ ନାନା ହାସ କୌତୁକ ସେ
ତରଗତମାଳୀମାନ ଖ୍ୟାଳକ ଗୀତ
ବ୍ରଜମୋହନ କେଳିଯୁକ୍ତ କବିତ୍ୱ ସେ ।୨୧।

ଷନ୍ନା କଲମେ ପୁଣ କରିଛ ଶ୍ରମ
ତାଳ ପଟେ କାଗଜେ ଅକ୍ଷର କମ ସେ
ରୂପ ରଙ୍ଗରେ ନାନା ପଟ ପୁସ୍ତକ
ଲେଖା ଦେଖି ଆନନ୍ଦ ହୁଅନ୍ତି ଲୋକ ସେ । ୨୨ ।

ଯେତ୍ତେ ଅବା ହୋଇଲି ମୋହର ଗୁଣ
ତହିଁକ ମାତ୍ର ଏତ୍ତେ ପ୍ରଭୁ କାରଣ ସେ ।
କରିବ ମୂର୍ତ୍ତି ଅବା କର୍ଣ୍ଣ ପ୍ରଶଂସା
ସଭାରେ ଖୋଜିଲେ ତ ନମିଳେ ଭାଷା ସେ । ୨୩ ।

କବିମାନେ ମିଛେହେଁ ଗୀତ ବୋଲନ୍ତି
କାର୍ଯ୍ୟ ଲଭିବାକୁ କେ ସ୍ତୁତି କରନ୍ତି ସେ !
ଶ୍ରୀଗୁରୁମୁ କଥା ମୋର ନୋହେ ଏମନ୍ତ
ଅନ୍ତର୍ଯ୍ୟାମୀ ତ ଜାଣୁଥିବେ ମୋ ଚିତ୍ତ ସେ । ୨୪ ।

---

୨୨ । ଷନ୍ନାକଲମେ—ଲେଖନୀ, କଲମ ଓ ତୂଳୀ ।

୨୩ । ଯେତ୍ତେ—ଯାହା କିଛି ।

ଘନ ନାଦ ଶୁଣିଲେ ଯେହ୍ନେ ମୟୂର
ଆନନ୍ଦେ ନୃତ୍ୟ କରେ ହୋଇ ଅଧୀର ଯେ ।
ସେ ରୂପ ପ୍ରଭୁ କାର୍ଯ୍ୟ ଲେଖି ମୋ ମନ
ନିଶ୍ଚେ କହୁଛି ନୋହେ ମିଥ୍ୟା ବଚନ ଯେ । ୨୫ ।

ବହୁତ ରାଜ୍ୟମାନ ଦେଖିଛି ମୁହିଁ
କେତେ ରାଜାମାନଙ୍କୁ ଭେଟିଛି ଯାଇଁ ଯେ ।
ଅନେକ ରୂପେ ମୋତେ କରନ୍ତି ଦାନ
ତଥାପି ସେ କ ମୋର ପ୍ରଭୁ ସମାନ ଯେ । ୨୯ ।

କହିଁ ରାଜା ସୁନ୍ଦର ନ ଥାଇ ଗୁଣ
କେ ଗୁଣଥିଲେ ନୋହୁଥାନ୍ତି ଘଟଣ ଯେ ।
କେ ସୁନ୍ଦର ହୋଇଲେ ନୁହନ୍ତି ଶୂର
କେ ଶୂର ହେଲେ ବୁଝିବାକୁ ଅଧୀର ଯେ । ୨୭ ।

ବୁଝିପାରନ୍ତି ଯେ ସେ ଅମଳ ବଶ
କେ ଅବା ଦାତା ହେଲେ ତାଙ୍କର କ୍ଳେଶ ଯେ ।
କେ ଧନବନ୍ତ ଭେଟ ନୋହେ ତାଙ୍କର
କେ ନାସ୍ତିବଶ ପଶିଥାନ୍ତି ଭିତର ଯେ । ୨୮ ।

କହନ୍ତି ଯାହା କେ ତା କରନ୍ତି ନାହିଁ
କେ ସତ କହେ ଗୁଣେ ସୁଖ ନପାଇ ଯେ ।
କେ ଗୁଣ ଘେନିଲେ ତା ପାଶ ପ୍ରବଳ
ଦୁଇଶ ଦେଲେ ଶଏ କରଇ ମୂଳ ଯେ । ୨୯ ।

ଅମଳ ବଶ କେହୁ ନାସ୍ତିରେ ବଶ
ଆହାରେ ବଶ କେହୁ ନିଦ୍ରା ଆବେଶ ଯେ ।

---

୨୮ । ଅମଳ—ମାଦକ ଦ୍ରବ୍ୟ ।

କେ ପାଠ କଣ କେତୁ କଣ ଶ୍ଲୋକରେ
କେ ଖେଳ କଣ କେତୁ ଗୀତ ନାଟରେ ଯେ । ୩୦ ।

ଈଶ୍ୱର ନିଜ ତେଜ ରଖି ଯତନେ
ଏ ପ୍ରଭୁଙ୍କୁ କରିଛୁ ବନ୍ଧ ସୁମନେ ଯେ ।
କଲ ସକଳ ଗୁଣଗଣ ମଣ୍ଡଳ
ସିନ୍ଧୁ ପରାଏ ହୃଦ କଲ ଗମ୍ଭୀର ଯେ । ୩୧ ।

ମାରିବା ତାରିବାର ଏ ଗୁଣ ଦୁଇ
ନେତ୍ରେ ଥୋଇ ଗଢ଼ିଲ ପଦ ପରାଇ ଯେ
ପୀୟୂଷ ବଷ ଯୋଗେ ଦାସଙ୍କୁ ଦେଲ
ଅଧର ଅରୁଣଙ୍କୁ ଧାତା ରଚିଲ ଯେ । ୩୨ ।

ଅନେକ ଗୁଣେ ନିର୍ମାଣିଲ ଶ୍ରୀକର
ବଳଶ୍ରୀ କାଳ ହୁଅ ଦେଲ ଏ ବର ଯେ ।
ପୁଣି କନ୍ଧିଁରେ ତାଲ ଖଣ୍ଡାକୁ ଦେଇ
କହିଲ କ୍ଷତ୍ରୀକୁଳ ଚକାଅ ଦନ୍ଧ ଯେ । ୩୩ ।

ପୁଣି କହିଲ କୁଶ ପାଣିକ ଦେନ
ଦ୍ୱିଜ କୁଳକୁ ଦାନକର ମେଦିନୀ ଯେ ।
ପୁଣି କୋଇଲ ବଜ୍ର ପରାଏ ହୋଇ
ଦେବ ପ୍ରବଳ ମାଲବଳକୁ ଦନ୍ଧ ଯେ । ୩୪ ।

ପୁଣି କୋଇଲ ହୋଇ ଚମ୍ପକ ମାଳା
ମୋହକ ମଣ୍ଡି ନାଶି ପଦ୍ମ ମା ଗଳା ଯେ ।
ପୁଣି କୋଇଲ ଧନୁଶରକୁ ଧରି
ଯଉଁ ରାଜ୍ୟକୁ ଯିବ ନେବ ତା ମାରି ଯେ । ୩୫ ।

ପୁଣି ବୋଇଲ୍ଲ ଧରି ବାଗ ବରଗୁ
ଜଣିନେବ ହୋଇବ ଯାହାକୁ ଇଚ୍ଛା ଯେ ।
ପୁଣି ବୋଲେ ଧଇଲେ ପଅଲେଖନ
କୋଟି କୋଟି ସମ୍ପଦ ହେବ ଅର୍ଜନ ଯେ । ୩୬ ।

ପୁଣି ବୋଇଲ୍ଲ ଯାହା ଶିରେ ଲଗିବ
ତାକୁ ସୁମୁଖ ହେବ ମୂର୍ତ୍ତି ହଇବ ଯେ ।
ପୁଣି ବୋଇଲ୍ଲ ଆଜ ଦେବା କ ବର
ଯାହା ଇଚ୍ଛା କରିବ ସେ କାର୍ଯ୍ୟ କର ଯେ । ୩୭ ।

ଏବେ ଶୁଣ ସୁଚରିତେ ବିବେକ ନରେ
ନୃପମଣ୍ଡନ ହିନେ ହିନ୍ଦ ଗଡ଼ରେ ଯେ
ବିଜଏ କରିଥିଲେ ଖିଲ୍ଲ ମତରେ
ଘଏ ସାହେବ ଛନ୍ତି ପୁଣି ହଜୁରେ ଯେ । ୩୮ ।

ସୁଯୋଗରେ ନରେନ୍ଦ୍ର ସାହେବ ଛନ୍ତି
ମୋଠାରେ ହୋଇଛନ୍ତି ପ୍ରସନ୍ନ ମତି ଯେ ।
କେବର୍ତ୍ତ ଭଲ ଭଲ ଲୋକ ସଙ୍ଗରେ
ବିକସୀ ପାଟଯୋଷୀ ମହାପାତରେ ଯେ । ୩୯ ।

ଛାମୁକରଣ ନାନା ନିଯୋଗୀ ଲୋକ
ଶିଷ୍ଟଲୋକ ଖଟଣି ସବ ସେବକ ଯେ ।

---

୩୬ । ବାଗ—ଘୋଡ଼ାର ଲଗାମ ।

୩୭ । ସୁମୁଖ—ଦୟାଶୀଳ ।

୩୮ । ବିବେକ—ବିବେକୀ; ହିନ୍ଦଗଡ଼—ଢେଙ୍କାନାଳଠାରୁ ଦଶମାଇଲ ଦୂରବର୍ତ୍ତୀ ପ୍ରାଚୀନ ଦୁର୍ଗ । ଖିଲ୍ଲମତରେ—ସେବକମାନଙ୍କ ସହିତ ଆଡ଼ମ୍ବରରେ ।

ଅଛନ୍ତି କୁମେଦାର ସୁବେଦାର ହିଁ
ସମସ୍ତ ସରଦାରେ ଅଛନ୍ତି ତହିଁ ଯେ । ୪୦।
ଏହିକାଳେ ଘୁମୁରେ ଭେଟିଲି ମୁହିଁ
ଏ ସମର ତରଙ୍ଗ ଗୀତକୁ ଦେଇ ଯେ ।
ଆଜ୍ଞା ପ୍ରମାଣେ ପୁଣି ପଢ଼ିଲି ଗୀତ
ଜଣାଇଲି ପୁଣି ମୋ ଦୁଃଖ ସମସ୍ତ ଯେ । ୪୧ ।
ମହିମା ମନେ ଏହା ହୋଉଛି ମୋର
ଶ୍ରୀକରକୁ କହିଲି ସେ ବେଦବର ଯେ ।
ଲକ୍ଷ ଲକ୍ଷ ଲୋକଙ୍କୁ ବାଣ୍ଟିବ ପଢ଼
ବରଜନାଥ ବଡ଼ଜେନାକୁ ଛାଡ଼ ଯେ । ୪୨।
ଏମନ୍ତ ଯେବେ କହ ନଥ ନ୍ତା ପୁଣ
କରୁଣାସିନ୍ଧୁ କ ହୁଅନ୍ତ ଦାରୁଣ ହେ ।
ପ୍ରଭୁଦ୍ରୋହ ଯଦ୍ୟପି ହେବ ନିଷ୍ଠୁର
କହିବାକୁ ଯୋଗ୍ୟତା ଅଛି କାହାର ହେ । ୪୩ ।
ଏତେ ମାସ ଆସୁଥିଲି ଥିଲି ମୋହର
ଭେଟି ଆପଣାଗୁଣ କଲି ଗୋଚର ଯେ ।
ଏଥର ସବୁ ଦ୍ରବ୍ୟ ଚଢ଼େ ହଜୁର
ଦୟା କରିବେ କବା ହେବେ ନିଷ୍ଠୁର ଯେ । ୪୪ ।
ଏଣିକ ଏହିଗୀତେ କର୍ତ୍ତିବ ତାହା
ଆସିଅଛି ମୁଁ କରି ବଡ଼ ଉଚ୍ଛାହା ଯେ ।
ମନରେ କରିଅଛି ଯେତେ କାମନା
କେବେହେଁ ପାରିବ ତା ପ୍ରଭୁଙ୍କ ବିନା ଯେ । ୪୫ ।

---

୪୦ । କୁମେଦାର—ଅଶ୍ୱାରୋହୀ; ସୁବେଦାର—ସେନାଧ୍ୟକ୍ଷ ।
୪୧ । ପଢ଼—ବର୍ତ୍ତନ ।

ଏ ସମର ତରଙ୍ଗ ଗୀତ ପ୍ରସାଦେ
ସମ୍ପାଦ୍ଧ ହୋଇବ ମୁଁ ଅତ ପ୍ରମୋଦେ ଯେ ।
ହେ ମହାରାଜା ଦୁର୍ବ୍ୟ ଚତ୍ତରେ ହୋଇ
ମୋଠାରେ ଦୟାକର ଆରତ ରହୁ ଯେ । ୪୬ ।
କୁଳକୁଳ କହୁତ ହେଲା ସ୍ଥକତ
ଅନୁସରଣେ ରହିବାକୁ ମୋ ଚିତ୍ତ ଯେ ।
ପୁରୁଷାନୁକ୍ରମକୁ ସଙ୍ଗାଳ ହେବ
ସଂସାରେ ପ୍ରଭୁଙ୍କର ଯଶ ରହିବ ଯେ । ୪୭ ।
ଏ ଅନ୍ତେ ହେ ସୁଜନେ ନୃପତିଚନ୍ଦ୍ର
ତକ୍ଷଣେ କୃପାକଲେ ହୋଇ ପ୍ରମୋଦ ଯେ ।
ଅଟଙ୍ଗା ବଷେ ବ୍ରାହ୍ମୀ ନଦୀ ତଟରେ
ଗ୍ରାମ ଗୋଟିଏ ନୂଆଗାଆଁ ନାମରେ ଯେ । ୪୮ ।
ପାନ ପିକରେ ଏହୁ ଗ୍ରାମକୁ ଦେଇ
ପାଞ୍ଚଶ କାହାଣ ନଗଦ ଖଞ୍ଜାଇ ଯେ ।
ହୁକୁମ ଦେଲେ ବକ୍ସିଜେନା ଏ ଶୁଣ
ଉକ୍ତବସ୍ତୁ ପଦାର୍ଥତ ନୋହେ ଗ୍ରହଣ ଯେ । ୪୯ ।
ବଂଶାନୁକ୍ରମେ ଗ୍ରାମ ଭୋଗ କରିବ
ଭୂମି ଥିବାଯାକ ଏ ବର୍ତ୍ତନ ନେବ ଯେ ।
ଏଥିରେ ଯେବେ କାର୍ଯ୍ୟ ହେବ ଅଚଳ
ଜଣାଣ କଲେ ଦଣ୍ଡହେବ ତତ୍କାଳ ଯେ । ୫୦ ।

---

୪୯ । ପାନପିକରେ—ପାନପିକ ଯେପରି ପକାଇଦେଲେ ଆଉ ଥରେ ତାକୁ ଗ୍ରହଣ କରାଯାଇ ପାରେ ନାହିଁ, ସେହିପରି କୌଣସି ଦାନ ଥରେ ଦେଲେ ତାକୁ ଆଉ ଗ୍ରହଣ କରାଯାଇ ପାରେ ନାହିଁ ।

ଦୁଲଣ ଟଙ୍କା ପାଟବସ୍ତ୍ର ସଜ୍ଜିତ
ଘୁଙ୍ଗୁଡ଼ାଘରୁ ହେଲ ସେକ୍ଷଣି ବାହାରି ଯେ ।
ପ୍ରମୋଦେ ଘେନି ତାହା ମଜୁରା କରି
ଗ୍ରାହକରେ ନାହିଁ ଏ ପ୍ରଭୁଙ୍କ ସରି ଯେ । ୫୧ ।

ନବଘନ ସୁନ୍ଦର ବ୍ରଜକିଶୋର
ନବ ଗୋପ ଯୁବତୀ ଚିତ୍ତ ଚୋର ଯେ ।
ତାଙ୍କ ଶ୍ରୀଚରଣରେ ରହିବ ମତି
ବ୍ରଜନାଥର ହେଉ ଏ ସଦଗତି ଯେ । ୫୨ ।

—ସମାପ୍ତ—

---

୫୧ । ଘୁଙ୍ଗୁଡ଼ା ଘରୁ—ଗଳାଘରୁ; ମଜୁରା କରି—ସମ୍ମାନ ପ୍ରଦର୍ଶନ କରି ।